


# ପ୍ରିୟ ପରିଧି






## ସୁଧୀର କୁମାର ବିଜୟେନ୍ଦ୍ର ନାରାୟଣ






**ପ୍ରିୟ ପରିଧି** ଗୋଟିଏ ଦୃଷ୍ଟିରୁ ଏକ ଗଳ୍ପ ସଂକଳନ ଓ ଆଉ ଗୋଟିଏ ଦୃଷ୍ଟିରୁ ଏକ ଜୀବନ- ସ୍ମୃତି । ନିଜ ଜୀବନରେ ଅଙ୍ଗେ ନିଭେଇଥିବା କିଛି ଘଟଣା ଓ ସଂସ୍ପର୍ଶରେ ଆସିଥିବା କିଛି ବ୍ୟକ୍ତି ହିଁ ଏ କାହାଣୀଗୁଡ଼ିକର ପୃଷ୍ଠଭୂମି । କଥାକାର ବାସ୍ତବ ଘଟଣାଗୁଡ଼ିକୁ କାହାଣୀର ଆକୃତି ଦେବା ବେଳେ ସେମାନଙ୍କୁ ଶବ୍ଦର ପୋଷାକ ପିନ୍ଧେଇବା ଭିନ୍ନ ଭାବର ଆତ୍ମାରେ କୌଣସି ପରିବର୍ତ୍ତନ କରି ନାହାନ୍ତି । ଗଳ୍ପଗୁଡ଼ିକ କେବଳ ସିଧା ସିଧା ଉଠି ଆସିଛନ୍ତି ସେଇ ଘଟଣା ଓ ଦୁର୍ଘଟଣାର ଜଳଭଉଁରୀ ଭିତରୁ । **ପ୍ରିୟ ପରିଧିର** ଚରିତ୍ରମାନେ ବେଳେ ବେଳେ ନାୟକତ୍ୱର ପରିଧି ପାଖାପାଖି ପହଞ୍ଚି ସେଇଠୁ ଫେରିଆସିବା ପରି ମନେ ହୋଇପାରନ୍ତି । ବସ୍ତୁତଃ ସାଧାରଣ ମଣିଷମାନଙ୍କ ପାଇଁ ନାୟକତ୍ୱ ଏକ କଳ୍ପନା ମାତ୍ର । ତା' ନହେଲେ ଶତ ପ୍ରତିଶତ ସୁଗୁଣର ଅଧିକାରୀ ସମ୍ପୂର୍ଣ୍ଣ ନାୟକ କିମ୍ବା ଶତ ପ୍ରତିଶତ ଦୁର୍ଗୁଣର ଉତ୍ସ ନିରୋଳା ଖଳନାୟକ ଆମ ସମୟର ସମାଜରେ ଖୁବ୍ ବିରଳ । ସେହି ପୃଷ୍ଠଭୂମିରେ **ପ୍ରିୟ ପରିଧିର** ପାତ୍ରପାତ୍ରୀମାନେ କେବଳ ସରଳ ଏବଂ ଜଟିଳ ନୁହନ୍ତି, ଆଶ୍ଚର୍ଯ୍ୟଜନକ ଭାବେ ଆମର ପରିଚିତ । କାହାଣୀ ଗୁଡ଼ିକର ଅନାସକ୍ତ ଅନୁଶୀଳନ ପାଠକପାଠିକାଙ୍କୁ ଆତ୍ମୋପଲବ୍ଧି ଏବଂ ନିଜ ନିଜର ଚିହ୍ନା ଚୌହଦି ସହ ପରିଚିତ ହେବାର ଧାରଣା ଦେବ ବୋଲି ଆଶା କରାଯାଏ ।

ପ୍ରକାଶିକା
ଶ୍ରୀମତୀ ବନ୍ଦନା ଦାସ
ମୃଗୟା, ପ୍ଲଟ ନଂ-୨୪୦/୮୯-୯୦, ଏରୋଡ୍ରମ ଏରିଆ
ଭୁବନେଶ୍ୱର- ୭୫୧୦୦୯

ପ୍ରଥମ ପ୍ରକାଶ
୧୯୯୭

ଅକ୍ଷର ସଜ୍ଜା
କୋଣାର୍କ ଡାଟା ପ୍ରୋସେସିଂ
ନୂଆପଲ୍ଲୀ, ଭୁବନେଶ୍ୱର-୭୫୧୦୧୨

ମୁଦ୍ରଣ
ଜଗନ୍ନାଥ ପ୍ରୋସେସ୍
ଡଗରପଡ଼ା
କଟକ- ୭୫୩୦୦୨

ମୂଲ୍ୟ
ପଚାଶ ଟଙ୍କା

ବୁଢ଼ୀ'ମା କାହାଣୀ କହିଲାବେଳେ ପଚାରେ, 'ଅଙ୍ଗେ ନିଭାଇବା କଥା କହିବି ନା ଶୁଣା କଥା କହିବି !' ସେତେବେଳେ ତା ଅଙ୍ଗେ ନିଭାଇବା କଥାକୁ ପଚାରେ କିଏ ! ଶୁଣା କାହାଣୀର ସ୍ୱପ୍ନପୁରୀର ରାଜକୁମାର କୁମାରୀ  ଆଜି ଅଙ୍ଗେ ନିଭାଇବା ସଂସାର ଭିତରେ ହଜି ଯାଉଚନ୍ତି ଧୀରେ ଧୀରେ । ସାଇ ପଡ଼ିଶା ବନ୍ଧୁ ବାନ୍ଧବ ଜଣା ଅଜଣା ମଣିଷର ଅଙ୍ଗେ ନିଭାଇବା କଥା ନିଜ ଅଙ୍ଗର ପରିଧିକୁ ନ ଆଣିଲେ ସେ କାହାଣୀ କଣ କହିହୁଏ ?

ସେଇ ପରିଧିଭିତରକୁ କିଛିଟା ଏ କାହାଣୀରେ ପାଠକକୁ ଆଣି ପାରିଥିଲେ ମୁଁ ସନ୍ତୁଷ୍ଟ ।

ପ୍ରକାଶିକା
ଶ୍ରୀମତୀ ଚନ୍ଦନା ଦାସ
ମୃଗୟା, ପ୍ଲଟ ନଂ-୨୪୦/୮୯-୯୦, ଏରୋଡ୍ରମ ଏରିଆ
ଭୁବନେଶ୍ୱର- ୭୫୧୦୦୯

ପ୍ରଥମ ପ୍ରକାଶ
୧୯୯୭

ଅକ୍ଷର ସଜ୍ଜା
କୋଣାର୍କ ଡାଟା ପ୍ରୋସେସିଂ
ନୂଆପଲ୍ଲୀ, ଭୁବନେଶ୍ୱର-୭୫୧୦୧୨

ମୁଦ୍ରଣ
ଜଗନ୍ନାଥ ପ୍ରୋସେସ୍
ଡଗରପଡ଼ା
କଟକ- ୭୫୩୦୦୨

ମୂଲ୍ୟ
ପଚାଶ ଟଙ୍କା

# କଥାକ୍ରମ

# ଏଣ୍ଡୁଅ

ପୋର୍ଟିକୋ ଉପରେ ବାଲକୋନୀ। ବାବାଙ୍କର ଏଇଟା ସବୁଠୁ ପ୍ରିୟ ଜାଗା। ଉପର ତାଲାରେ ଶୋଇବାଘରୁ ଗାଧୁଆଘର ଆଉ ଖାଇବା ବେଳକୁ ଦି'ଥର ତଳକୁ ଆସିବା ଛାଡ଼ିଦେଲେ ଏଇ ବାଲକୋନୀଟା ତାଙ୍କ ଆସ୍ଥାନ। ସକାଳୁ ଗାଧୁଆଘରୁ ମୁହଁ ହାତ ଧୋଇ ଏଇଠି ରେଡ଼ିଓ ଧରି ବସିଯାନ୍ତି। ସେଇଠିକୁ ସକାଳ ଚା' ବିସ୍କୁଟ ତା'ପରେ ଆଠଟା ବେଳକୁ ଜଳଖିଆ। ଗାଧୋଇବାକୁ ଯିବା ପର୍ଯ୍ୟନ୍ତ ସେଇଠି ବସି ଆମ୍ଭମାନଙ୍କ ସହ ଖବରକାଗଜ ପଢ଼ା ଗପସପ; ଏପରିକି କେହି ଆସିଲେ ମଧ୍ୟ ତଳେ ଡ୍ରଇଂରୁମ୍‌ରେ ନ ବସି ସିଧା ଏଇଠିକୁ।

ପ୍ରାୟ ମୁଁ ଖବରକାଗଜ ପଢ଼ିବାକୁ ଆସିବାବେଳକୁ ତାଙ୍କ ସକାଳ ଚା' ପର୍ବ ସରି ଯାଇଥାଏ। ସେଦିନ ମୁଁ ଟିକେ ଶୀଘ୍ର ଆସିଛି। ବାବାଙ୍କ ଚା' ଆସିଲା, ଦେଖିଲି ତିନିଟା ବିସ୍କୁଟ। ସବୁଦିନେ ତାଙ୍କର ଦି'ଟା। ସବୁ ବିଷୟରେ ତାଙ୍କର ନିୟମବନ୍ଧା। ହଠାତ୍ ତିନିଟା ଦେଖି ପଚାରିଲି, "ଏବେ କଣ ତିନିଟା?" "ରହ ଦେଖିବୁ" କହି ଖଣ୍ଡ ଖଣ୍ଡ କରି ଗୋଟେ ବିସ୍କୁଟ ପକାଇବା ଆରମ୍ଭ କଲେ ସାମ୍ନାରେ ଥିବା ଫୁଲକୁଣ୍ଡ ପାଖକୁ। ସଙ୍ଗେ ସଙ୍ଗେ ସେଇ କେଉଁ ସନ୍ଧିରେ ଥିଲା ଧାଇଁ ଆସିଲା ଏଣ୍ଡୁଅଟାଏ, ଆଉ ବୁଲି ବୁଲି ଖାଇବାକୁ ଲାଗିଲା ଖଣ୍ଡ ଖଣ୍ଡ ବିସ୍କୁଟ ସବୁ। ମୁଁ ବାବାଙ୍କ ମୁହଁକୁ ଚାହିଁଲି- ପଚାରିଲି! ତମର ସେ ଗୁଣ୍ଡୁଚି ମୂଷା ଆଉ ଆସୁ ନାହାନ୍ତି କି?" କହିଲେ "ଗୁଣ୍ଡୁଚି ଯାଇ ତା'ପରେ ବଣି ସବୁ ଆସିଲେ; ବଣିକୁ ଡରି ଆଉ ଆସିଲେ ନାହିଁ ଗୁଣ୍ଡୁଚି। ଏବେ ବଣି ଆସିବା ଆଗରୁ ଏଇଟା ଏଇଠି ଜଗି ରହୁଚି। ପକଉ ପକଉ ଖାଇ ନେଉଚି।"

ମୋର ମନେ ପଡ଼ିଲା ବୁଢ଼ୀମା କହେ ବାବା କିମିତି ପିଲାବେଳେ ଖରାବେଳଟାରେ, ସମସ୍ତେ ଖାଇସାରି ଶୋଇଥିଲା ବେଳକୁ, ବାଡ଼ିଖଣ୍ଡେ ଧରି ଘୂରି ବୁଲୁଥିଲେ ଆଉ ଦୁଇ ଚାରିଟା ଏଣ୍ଡୁଅ ମାରି ଘୋଷାରି ଘୋଷାରି ଆଣି ବାହାରେ ପକାଉଥିଲେ। ସତେ ଯେମିତି ଶିକାର କରି ଆଣି ଦେଖାଉଥିଲେ। ପଚାରିଲେ ବାବା କୁଆଡ଼େ କହୁଥିଲେ- "ମୁଁ ତାକୁ ପଚାରିଲି କଣ ମାଡ଼ଖାଇ ମରିବୁ? ସେ ମୁଣ୍ଡ ଟୁଙ୍ଗାରି ହଁ କଲାରୁ ମାରିଲି।"

ମୋ ଚିନ୍ତାଧାରାରେ ବାଧାଦେଇ ବାବା କହୁଥିଲେ ସେଇ ଏଣ୍ଡୁଅକୁ, "ଆଉ ଖାଇବୁ?" ଏଣ୍ଡୁଅ ମୁଣ୍ଡ ଟୁଙ୍ଗାରିବା ଦେଖି ଆଉ ଖଣ୍ଡେ ବିସ୍କୁଟ ପକାଇ ଦେଉଥିଲେ ତା' ଆଡ଼କୁ। ଏମିତି ଦେଉ ଦେଉ ନିଜପାଇଁ ଖଣ୍ଡେ ରଖି ବାକି ଦି'ଖଣ୍ଡ ଏବଂ ବେଳେ ବେଳେ ପୂରା ଫିଙ୍ଗି ଦେଉଥିଲେ। ଭାବୁଥିଲି ପିଲାବେଳର ପ୍ରାୟଶ୍ଚିତ୍ତ କରୁଚନ୍ତି ପରା!

ବାବାଙ୍କ ବୟସ ୮୫ ଡେଇଁଲାଣି। ସୁସ୍ଥ ମଣିଷ। କିଛି ଚଲାବୁଲା କି ପରିଶ୍ରମ କରନ୍ତି ନାହିଁ। ନିହାତି ବେଶି ହେଲେ ବାଥରୁମ୍, ବାଲକୋନୀ, ଖାଇବାପାଇଁ ତଳକୁ, ଛଡ଼ା ଝିଅମାନଙ୍କ ଘରକୁ ଯିବାପାଇଁ ଉପରୁ ଓହ୍ଲାଇ ଗାଡ଼ିପର୍ଯ୍ୟନ୍ତ; ସେତକ ହେଲା ତାଙ୍କର ପରିଶ୍ରମ। ଖାଇବା ବି ସେମିତି ମନ୍ଦ ନୁହେଁ- ମାଂସ ଅଧକିଲୋ ଖାଇବାଟା ନିତିଦିନିଆ ଖାଇବା ପରି- ସେଥିରେ ଏସିଡିଟି ହୁଏ ନାହିଁ କି ବଦହଜମ ହୁଏ ନାହିଁ; ବରଂ ସେଇ ତରକାରିରୁ ତାଙ୍କ ଖାଇବାର ଅଧା ମୁଁ ଖାଇଲେ ପେଟ ଜଳୁଥିବ ସନ୍ଧ୍ୟାଯାଏ। ଛାଡ଼ ତାଙ୍କ ଭାଗ୍ୟ। ନ ହେଲେ ଏତେବର୍ଷ ପର୍ଯ୍ୟନ୍ତ ସକାଳୁ ଅଣ୍ଡା, ଖରାବେଳେ ମାଂସ ନ ହେଲେ ଚର୍ବିବାଲା ବଡ଼ ବଡ଼ ମାଛ ପିସ୍ ଚାରି ଖଣ୍ଡ, ସନ୍ଧ୍ୟାବେଳକୁ ସିଙ୍ଗଡ଼ା କି ଆଳୁଚପ୍ ପୁଣି ରାତିରେ ଡାଲମା ସାଙ୍ଗକୁ ଦୁଧରେ ରସଗୋଲା କି କିଛି ମିଠା କଦଳୀ ରୋଟି ସହ ଚକଟା ଖାଇ ହଜମ କରିବାର ଶକ୍ତି କେତେ ଜଣଙ୍କର ଅଛି! ତେବେ ରୋଗ ଭିତରେ ଫୁଟବଲ ଖେଳରୁ ପ୍ରାଇଜ୍ ପାଇଲାପରି ଜଖମ ଗଣ୍ଠି ସବୁର ବଥା ବେଳେବେଳେ ବାହାରେ। ବରଂ ବଡ଼ ରୋଗଟା ହେଲା କାଶ କଫ। ଠିକ୍ ଶୀତଦିନ ଆରମ୍ଭବେଳକୁ ସାମାନ୍ୟ ଅନିୟମ ହେଲେ, ଧରିପକାଏ ବ୍ରୋଙ୍କିଆଲ ଆଜମା ରକମ, ତା ସାଙ୍ଗକୁ ବେଳେବେଳେ ନିଉମୋନିକ କଣ୍ଡିସନ। ଏ ଅବସ୍ଥା ହେଲେ ଖାଇବା ଛାଡ଼ି ଦିଅନ୍ତି ଆଉ ଇଞ୍ଜେକ୍‌ସନ ଔଷଧ କରି ଉଠାଇବାକୁ ପନ୍ଦରଦିନ ଲାଗିଯାଏ। ତେଣୁ ଆମେ ପୂଜାଛୁଟି ପରେ ତାଙ୍କୁ ଜଗିଥାଉ- ନ ହେଲେ ଏ ଉତ୍ତରମୁହାଁ ଘରଟାରେ ଗରମ ଲୁଗା ନ ପିନ୍ଧି ସକାଳ ସନ୍ଧ୍ୟା ବସିଯିବେ ଆଉ ଡାକି ଆଣିବେ ରୋଗ ବୈରାଗ।

ଏଥର ସେମିତି ଧଇଲା। ଗୋଟିଏ ଓଳି ବସିଗଲେ, ଥଣ୍ଡା ପବନ ସହ ଝଡ଼ ଟିକେ ଆସିଥିଲା ସେଦିନ। ଆମେ ସବୁ ଘରେ ନ ଥିଲୁ। ଆସିଲାବେଳକୁ ସେଇ ବାଲକୋନୀରେ ବସିଚନ୍ତି ରାସ୍ତାକୁ ଅନାଇ। ବର୍ଷା ତୁହାକୁ ତୁହା ପ୍ରାୟ ବାଲକୋନୀ ଉପରକୁ ଉଡ଼ାଇ ଆଣୁଚି ବେଳେବେଳେ ପବନରେ- ଓଦା ନ ହେଲେ ବି ଓଦା ରକମ। ବ୍ୟସ୍ତ ହୋଇ

ଭିତରକୁ ଆଣି ଯେତେ ଯାହା କଲେ ବି ତା' ଆରଦିନ ସକାଳ ସୁଦ୍ଧା ଘେଁ ଘେଁ ଆରମ୍ଭ ହୋଇ ଜ୍ୱର ଆସିଗଲା । ଡାକ୍ତର ଆସି ଏଣ୍ଟିବାୟୋଟିକ୍ସ ଲେଖିଦେଲେ । ତା' ସାଙ୍ଗକୁ ମେଞ୍ଚେ ଔଷଧ । ସମୟ ଦେଖି ଔଷଧ ଦେବା ତ ଯେ କେହି କରିଦେବ, କିନ୍ତୁ ତାଙ୍କୁ ଏଇ ସମୟରେ ଖୁଆଇବା ମୁସ୍କିଲ । ତା' ସାଙ୍ଗକୁ ଝାଡ଼ା ପରିସ୍ରା ଯିବା ବି କଷ୍ଟକର ହୋଇପଡ଼େ । ବେଡ୍ ପେନ୍ ଜିଦ୍‌ରେ ନେବେନି । ଏଣେ ଗାଧୁଆ ଘର ଯାଇ ଫେରି ଆସିବାବେଳକୁ ଅଣନିଃଶ୍ୱାସୀ ହୋଇ ଭୀଷଣ ଜୋର୍‌ରେ ଘଁ ଘଁ ହୁଅନ୍ତି । ଏଥର ଅବସ୍ଥା ଆହୁରି ତଳକୁ ତଳକୁ ହେଲା । ଏଣ୍ଟିବାୟୋଟିକ୍ସ କେପ୍‌ସୁଲ ବଦଳାଇ ଇଞ୍ଜେକ୍‌ସନ ଦେବା ଆରମ୍ଭ ହେଲା । ଡାକ୍ତର କହିଲେ ହସ୍ପିଟାଲ ନେଇଯିବା । କେତେବେଳେ ଅକ୍ସିଜେନ ଦରକାର ହେବ; ରାତିରେ ଇଞ୍ଜେକ୍‌ସନ ଇତ୍ୟାଦି ନେବାକୁ ପଡ଼ିବ । ଅଗତ୍ୟା ତା ଆରଦିନ ସନ୍ଧ୍ୟା ସୁଦ୍ଧା କେବିନରେ ନେଇ ଭର୍ତ୍ତି କରି ଆସିଲୁ ।

ମୁଁ ରାତିସାରା ଜଗି ସକାଳୁ ମୋ ସ୍ତ୍ରୀ ବା ଜଣେ ଭଉଣୀ ଆସିଲେ ଘରକୁ ଆସି ନିତ୍ୟକର୍ମ ସାରି, ପୁଣି ଯାଏ । ତାଙ୍କୁ ସଫାସଫି କରି କଣ ଟିକେ ଖୁଆଇ ଘରକୁ ଫେରେ । କିଛିଦିନପାଇଁ ଛୁଟି ନେଇ ଯାଇଥିଲି । ଖାଇ ଦେଇ ଖରାବେଳଟା ଦି'ଘଣ୍ଟା ଶୋଇ ପୁଣି ସନ୍ଧ୍ୟାବେଳକୁ ଯାଏ, ରାତି କଟାଇ ଫେରେ । ଡାକ୍ତର ବ୍ୟସ୍ତ ହୋଇ ପଡ଼ିଥିଲେ । କେଉଁ ଏଣ୍ଟିବାୟୋଟିକ୍ସ କାମ କରୁନି । ମଝିରେ ଭାବିଲେ କାଡ଼ିଆକ୍ ଆଜ୍‌ମା । ଏଣୁ ହାର୍ଟ ବାଲାଙ୍କୁ ଆଣି ଇ.ସି.ଜି. ଇତ୍ୟାଦି କରାଗଲା । ନା ସିଆଡୁ ଠିକ୍ ଥିଲା । ଘରେ ସମସ୍ତେ ବ୍ୟସ୍ତ । ଆଜକୁ ପାଞ୍ଚଦିନ ହେଲା । ସକାଳୁ ଆସି କହିଲି ରାତିରେ ଜ୍ୱର ଛାଡ଼ି ଯାଇଛି । ଟିକେ ଆରାମରେ ଶୋଇଛନ୍ତି କାଲି ରାତି ।

ପାଞ୍ଚଦିନ ହେଲା ବାଲକୋନୀକୁ ଯାଇ ନ ଥିଲି । ଚା' ସେଇ ବାଲକୋନୀ ଉପରକୁ ପଠାଇବାକୁ କହି ଯାଇ ସେଇ ବାବାଙ୍କ ଚେୟାରରେ ବସି ପଡ଼ିଲି । ମନଟା ଜମା ଭଲ ଲାଗୁ ନ ଥାଏ । ସାମ୍ନାରେ ଏରୋଡ୍ରମର ଖୋଲା ପଡ଼ିଆ । ବାବା ତାଙ୍କ ପଇଁଚାଳିଶ ବର୍ଷ ବୟସ ପର୍ଯ୍ୟନ୍ତ ଫୁଟ୍‌ବଲ୍ ଖେଳୁଥିଲେ । ସବୁଜ ଘାସ ଉପରେ ଫୁଲ୍‌ବେକ୍ ଖେଳିବାବେଳେ ଲମ୍ବା ଲମ୍ବା ସ୍ଲିପ ମାରି ସେ ବଲର ଇଣ୍ଟରସେପ୍ଟ କରିବାରେ ନାଁ କରିଥିଲେ । ଆଜି ସାମ୍ନାରେ ଏରୋଡ୍ରମର ସବୁଜ ପଡ଼ିଆ ଦେଖୁ ଦେଖୁ ସେଇ ଅତୀତର ଟାଉନ ପଡ଼ିଆର ବେକ୍‌ଲାଇନ୍ ପାଖରେ ଦଶ ଫୁଟ ଦୂରପର୍ଯ୍ୟନ୍ତ ଗୋଡ଼ ଲମ୍ବାଇ ବାବା ସ୍ଲିପ୍ ମାରି ଆଗେଇ ଆସୁଥିବାର ଛବିଟା ଆଖି ଆଗରେ ନାଚି ଉଠିଲା ।

ଚା' ଆଣି ଥୋଇଦେଲା । ତା' ସାଙ୍ଗକୁ ବିସ୍କୁଟ । ବିସ୍କୁଟ ଦେଖୁ ଦେଖୁ ଏଣୁଅ କଥା ମନେ ପଡ଼ିଗଲା । ମୁଁ ଫୁଲକୁଣ୍ଡ ସନ୍ଧିକି ଅନାଇଲି । ଏଣୁଅଟି ମୁହଁ କାଢ଼ି ସେବତୀ କୁଣ୍ଡ ତଳକୁ ଶୋଇଛି- ମୋହରି ଆଡ଼କୁ ଆଖି ଯୋଡ଼ିକ । ସତେ ଯେମିତି ଆଖିରେ କରୁଣତା ଭର୍ତ୍ତି । ମୋତେ ପଚାରୁଛି ସେଇ ଆଖିରେ କେତେ କଥା । ମୁଁ ବିସ୍କୁଟ ଭାଙ୍ଗି

ସିଆଡ଼କୁ ଦି'ଟା ଖଣ୍ଡ ପକାଇ ଦେଲି। ସେ ଆସିଲା ନାହିଁ। ମୁଁ ଚା'ରେ ମୁହଁ ଦେଇ ତାକୁଇ ଚାହିଁଥିଲି। ମୋତେ ଡରୁଛି ବୋଧହୁଏ। ଫୋନ୍ ବାଜିଲା। ମୁଁ ଚା' କପ ଧରି ଭିତରକୁ ଉଠିଗଲି। ଡାକ୍ତରଖାନାରୁ ଫୋନ୍, 'ଝାଳ ହେଉଛି।' ମୁଁ ଧାଇଁଲି ପୁଣି। ଝାଳ ହେବାଟା ଭଲ ଲକ୍ଷଣ ନୁହେଁ। ନର୍ସ କହିଲେ ବାନ୍ତି ହୋଇଥିଲା ଥରେ, ପୁଣି ବାନ୍ତି ଲାଗୁଛି। ଡାକ୍ତର କହିଲେ ଜ୍ୱର ନାହିଁ, ଛାତି ସଫା ହୋଇ ଆସିଲାଣି ଅନେକଟା। ଦୁର୍ବଳ ଦେହରେ ବାନ୍ତି ହେବା ଦ୍ୱାରା ଝାଳ ହୋଇଛି। ଇ.ସି.ଜି. ପୁଣି କରାଗଲା। ବ୍ୟସ୍ତ ହେବାର କିଛି ନାହିଁ। ସେଦିନ ମୁଁ ଆଉ ଘରକୁ ଆସି ନାହିଁ ସେଇଠି ରହିଲି। ମୁଁ ନ ଥିଲା ବେଳେ ବାବା ବେଶୀ ରୋଗିଣା ହୁଅନ୍ତି। ଡାକ୍ତର କହିଲେ- ''ସେଇଟା ସାଇକୋଲଜିକାଲ, ଆପଣ ଆଜି ପୂରା ରହିଯାଆନ୍ତୁ। ସେ ପ୍ରାୟ ସୁସ୍ଥ ହୋଇଗଲେଣି, କାଲି ଘରକୁ ନେଇଯିବେ। ଇମରଜେନ୍ସି କିଛି ପଡ଼ିବ ନାହିଁ। ଘରେ ବରଂ ଔଷଧ ପତ୍ର ଦେବେ, ଏଠି ଦଉଡ଼ା ଦଉଡ଼ି କରିବା ଅସୁବିଧା।''

ବାବା ଘରକୁ ଆସିଲେ। ବିଛଣାରେ ପଡ଼ିରହିଲେ। ଔଷଧ ନାଇଁ, ପଥ୍ୟ ଚାଲିଥାଏ। ପରଦିନ ସକାଳୁ ପୁଣି ଚା' ନେଇ ବସିବାବେଳକୁ ଏଣ୍ଡୁଅ କଥା ମନେ ପଡ଼ିଲା ମୋର। ସେମିତି ସେଇ ସେବତୀ କୁଣ୍ଡ ସେପାଖରେ ଥିଲା। ବିସ୍କୁଟ ଦି'ଖଣ୍ଡ ପକାଇଲି ସେ ହଲିଲା ନାହିଁ। ଦେଖିଲି ଆଗଦିନର ବିସ୍କୁଟ ସେମିତି ପଡ଼ିଛି। ମୁଁ ଉଠି ଯାଇ କୁଣ୍ଡ ପଛକୁ ଚାହିଁଲି- କୁଆଡ଼େ ନ ଯାଇ ସେଇଠି ସେମିତି ପଡ଼ିଛି। କଣ ମରିଗଲା କି, କାଇଁ କିଛି ହଲ ଚଲ ନାହିଁ। ଭାବିଲି ପାଣି ଟିକେ ଦେବି କି? ତା'ପରେ ଭାବିଲି ସବୁଦିନେ ପୁଣି ସେ ପାଣି ପାଏ କୋଉଠୁ। ତା' ବିଷୟରେ ସାମାନ୍ୟ ବ୍ୟସ୍ତ ହେଲେ ବି ଅନ୍ୟ ବ୍ୟସ୍ତତା ନେଇ ମୁଁ ପୁଣି ନିଜ କାମରେ ରହିଲି। ଅଫିସ ଆଜି ଯିବା କଥା। ଏତେ ଦିନର କାମ ବାକି ପଡ଼ିଥିବ। ଯା ଭିତରେ ଦୁଇଟା ଦିନ ବିତିଯାଇଚି। ଘରେ ବାବା ଓ ଅଫିସରେ ବାକିଆ କାମ ନେଇ ବାଲକୋନୀ ଯିବା ହୋଇନି କି ଏଣ୍ଡୁଅ କଥା ଚିନ୍ତା କରିନି।

ପରଦିନ ସକାଳୁ ଉଠିଲାବେଳକୁ ରେଡ଼ିଓ ଶବ୍ଦ ଶୁଣି ସ୍ତ୍ରୀଙ୍କ ମୁହଁକୁ ଚାହିଁଲି। ସେ ହସିଦେଇ କହିଲେ- ''ବାବା ଆଜି ଯାଇ ବାଲକୋନୀରେ ବସିଲେଣି,'' ମୁଁ ମୁହଁ ହାତ ଧୋଇ ଚା' ପଠାଇବାକୁ କହି ଉପରକୁ ଗଲି। ବାବା ଚା' ଖାଇ ସାରି ପାଳେ ବିସ୍କୁଟ ଧରିଛନ୍ତି ହାତରେ। ଆଗରୁ ବୋଧହୁଏ କିଛି ଏଣ୍ଡୁଅକୁ ଦିଆ ସରିଛି। ଏଣ୍ଡୁଅ ଏଠୁ ସେଠିକୁ ଧାଇଁ ଧାଇଁ ବିସ୍କୁଟ ଖାଉଛି।



# ଅଭିନୟ

କୋଣାର୍କ ଏକ୍ସପ୍ରେସର ଗୋଟିଏ ମାତ୍ର ସେକେଣ୍ଡ କ୍ଲାସ ଏ.ସି. କମ୍ପାର୍ଟମେଣ୍ଟରେ ବମ୍ବେ ଯାଉଥିବା ଓଡ଼ିଆମାନେ ନିଶ୍ଚେ ସେଇ ଦୁଇଟା ଦିନର ଯାତ୍ରା ଭିତରେ ପରସ୍ପରର ଘନିଷ୍ଠ ହୋଇଯିବେ, ଏଥିରେ ସନ୍ଦେହ ନାହିଁ। ପ୍ରଥମତଃ ସୁଦୂର ବମ୍ବେ ସହରକୁ ଯିବା ଭିତରେ ପ୍ରାୟ ପ୍ରତ୍ୟେକ ଦିନ ପାଞ୍ଚ ଛ' ଘଣ୍ଟା ଲେଟ୍ ଚାଲୁଥିବା ଟ୍ରେନ୍ ଯାତ୍ରାର ଯେଉଁ କଷ୍ଟ ତାକୁ ଲାଘବ କରିବାପାଇଁ ଗପସପ, ତାସ୍ ବା ବହି, ଖବରକାଗଜ, ମାଗାଜିନପାଇଁ ଏ କ୍ୟୁବିକଲ୍‌ରୁ ସେ କ୍ୟୁବିକଲ୍ ଘୂରି ବୁଲିବା ଭିତରେ ଖାଲି ଓଡ଼ିଆମାନଙ୍କ ଭିତରେ ପରିଚୟ କାହିଁକି ସମସ୍ତ ସହଯାତ୍ରୀଙ୍କସହ ପରିଚୟ ହେବା ସ୍ୱାଭାବିକ। ଓଡ଼ିଆମାନଙ୍କ ଭିତରେ ଚିହ୍ନା ପରିଚୟରୁ ପରସ୍ପର ପରିଚିତ ବନ୍ଧୁବାନ୍ଧବଙ୍କ କଥା ଉଠିବ ଆଉ ସମ୍ପର୍କ ବି ବାହାରିପଡ଼ିବ। ଘନିଷ୍ଠତା ବଢ଼ିଯିବା ସ୍ୱାଭାବିକ।

ଏମିତି ଏକ ଅବସ୍ଥାରେ ଶ୍ରୀମତୀ ମହାପାତ୍ରଙ୍କ ସହ ପରିଚୟ ଓ ଘନିଷ୍ଠତା(?)। ଶ୍ରୀମତୀ ମହାପାତ୍ର ଏକା ଯାଉଥିଲେ ତାଙ୍କ ପୁଅବୋହୂଙ୍କ ପାଖକୁ ବମ୍ବେ। ବମ୍ବେରେ ତାଙ୍କର ତିନି ଓ ଛଅ ବର୍ଷର ନାତି ଓ ନାତୁଣୀ। ତାଙ୍କୁ ଦେଖିବାକୁ ମନ ଉଛାଟ। କିନ୍ତୁ ବ୍ୟସ୍ତତାଟା ବେଶୀ ବୋହୂର ଦେହ ଖରାପଯୋଗୁଁ। ସେ ଡାକ୍ତରଖାନାରେ ଏବଂ ତାଙ୍କୁ ଦେଖାଶୁଣା କରିବାପାଇଁ ପୁଅ ମଧ୍ୟ ଛୁଟି ନେଇ ଡାକ୍ତରଖାନାରେ। ଆମ ବ୍ୟସ୍ତତା ଦେଖି ସେ କହିଲେ, ଡାକ୍ତରଖାନା ମାନେ ନର୍ସିଂହୋମ୍। ଭଲ ନର୍ସିଂହୋମ୍। ତାଙ୍କ କମ୍ପାନୀ ତରଫରୁ ବଡ଼ ବଡ଼ ଅଫିସରଙ୍କପାଇଁ ବ୍ୟବସ୍ଥା, ବଡ଼ ନର୍ସିଂହୋମ୍‌ରେ।

ଆଗରୁ ସେ କହିଥିଲେ ତାଙ୍କ ପୁଅ ଇଞ୍ଜିନିଅରିଂ ପାଷ୍ଟ ଡିଭିଜନରେ ପାସ କରି ଆଇ.ଆଇ.ଏମ୍.ରୁ ପଢ଼ି ଅଧଡଜନ ବଡ଼ କମ୍ପାନୀରେ ଚାକିରି ପାଇଥିଲେ। ବାଛି ବାଛି ଗୋଟେ ଦୁଇଟା ଚାଖି ପାଞ୍ଚ ଅଙ୍କ ଦରମା ସହ ଘର ଗାଡ଼ି ଆସବାବ ପତ୍ର ଇତ୍ୟାଦି ଯେଉଁ କମ୍ପାନୀ ଦେଲା, ସେଇଥିରେ ଶେଷରେ ଚାକିରି କରି ବମ୍ବେରେ ରହନ୍ତି। କିଛି ସମୟ ପରେ ବେଶ୍ ଟିକେ ପରିଚୟରୁ ଘନିଷ୍ଠତା ଜମି ଆସିବାବେଳକୁ କହିଥିଲେ ଯେ ତାଙ୍କ ବୋହୂ ମଧ ଆଇ.ଆଇ.ଏମ୍.ରୁ ପାସ୍ କରି ଗୋଟେ କମ୍ପାନୀରେ ଚାକିରି କରନ୍ତି। ଧୀରେ ଧୀରେ ଜାଣିଲୁ ତାଙ୍କ ବୋହୂ ଓଡ଼ିଆ ନୁହନ୍ତି। ଏଇ କଥାଟା ପ୍ରଥମରୁ ଲୁଚାଇବାର କାରଣ କଣ ବା ଥିଲା! ବୋଧହୁଏ ଇଚ୍ଛା ବିରୁଦ୍ଧରେ ପୁଅ ବାହା ହୋଇଚି, ସେଇଥିପାଇଁ ସେ ବିଷୟଟା ଏମିତି ମିଠା କଥା ନୁହେଁ ବୋଲି କହିବାକୁ ଡେରି। ଯାହାହେଉ ଭଦ୍ର ମହିଳା ପୁଅକୁ ନେଇ ଗର୍ବ କରୁଥିଲେ ପ୍ରଥମରୁ। ପୁଅର ବିଦେଶଯିବା କଥା କହିବାବେଳକୁ ଏମିତିଭାବରେ କହିଲେ ଯେ ଆମେ ଜାଣିପାରିଲୁ ସେ ମଧ ତାଙ୍କ ସ୍ୱାମୀଙ୍କ ସହ ଥରେ ବିଦେଶ ଯାଇଥିଲେ।

କହିଲେ, ''ରମୁ ଯେତେବେଳେ ଦୁଇ ମାସପାଇଁ ଲଣ୍ଡନ ଗଲା ତାଙ୍କ କମ୍ପାନୀ କାମରେ, ଆମେ ତା ପାଇଁ ସବୁ ପ୍ରୋଗ୍ରାମ ବନେଇ ଦେଇଥିଲୁ। ତାକୁ ବାଧ କଲୁ ସ୍ତ୍ରୀକୁ ନେଇଯା- ନେଲା ବି। ଲଣ୍ଡନରେ କେଉଁଠି ରହିବୁ, କ'ଣ କେଉଁଠି ଖାଇବୁ, ସେଇଠୁ ୟୁରୋପ କେମିତି ଯିବୁ ଓ କେଉଁ ସହରରେ କେଉଁଠି ରହିବୁ, କ'ଣ କିଣିବୁ ସବୁ ଲିଷ୍ଟକରି ଦେଇଥିଲୁ। ଆପଣ ଆଶ୍ଚର୍ଯ୍ୟ ହେବେ, ଆମେ ଯେଉଁ ହୋଟେଲରେ ରହି ରହି ଆସିଥିଲୁ ରମୁ ବି ସେଇ ସେଇ ହୋଟେଲରେ ରହି ଆସିଥିଲା।'' ଏତେ କଥା କହିବା ପରେ ଆମେ ଯଦି ତାଙ୍କ ନିଜର ବିଦେଶଯିବା ବିଷୟରେ ଉତ୍ସୁକ ହୋଇ କିଛି ନ ପଚାରିଥାନ୍ତୁ ଘନିଷ୍ଠତା ଆସିଥାନ୍ତା କେଉଁଠୁ?

କହିଲେ, ''ୟା'ଙ୍କ ସହ ବୁଲିବାକୁ ଯାଇଥିଲି ୧୯୬୫ରେ। ଯେତ ଆଗରୁ ପ୍ରାୟ ପ୍ରତି ବର୍ଷ ଯାଆନ୍ତି ଭିଜିଟିଂ ପ୍ରଫେସର୍ ହିସାବରେ। ମୁଁ କ'ଣ କୁଆଡ଼େ ଯାଇପାରେ? ସେ ଥରେ ଜିଦ୍ ଲଗାଇଲେ 'ଏଇଟା ଶେଷ, ନିଶ୍ଚେ ଯିବାକୁ ହେବ।' ଗୋଟେ ରାଉଣ୍ଡ ୟୁରୋପ ଓ ଷ୍ଟେଟ୍‌ସ୍ ମାରିଦେଇ ଆସିଲି।'' ଏତକ ଆମପାଇଁ ଯଥେଷ୍ଟ ହୋଇଥାନ୍ତା। କିନ୍ତୁ ଆମେ ବୋକାମି କରି ପଦେ ବିଦେଶଯିବା କଥା ପଚାରି ଦେଇଚୁ- ଯାଉ କୁଆଡ଼େ। ବିଦେଶର ଟ୍ରେନ, ବସ୍, ପ୍ଲେନ, ଘରଦ୍ୱାର ବଗିଚା, ରାସ୍ତା, ପାର୍କ, ଖାଇବା, ପିଇବା, ହୋଟେଲ, ସିନେମା, ମଣିଷ, ପଶୁ ଇତ୍ୟାଦି ସବୁ ବିଷୟରେ ନିକୃଷ୍ଟ ଭାରତର ତୁଳନା ଶୁଣୁ ଶୁଣୁ ଭାବିଲୁ ବମ୍ବେ ଦୁଇ ଦିନର ରାସ୍ତା ନ ହୋଇ ଚାରି ଦିନର ରାସ୍ତା ହେଲେ ମଧ ଆମକୁ ବୋର୍ ହେବାକୁ ପଡ଼ନ୍ତା ନାହିଁ।

ଟ୍ରେନ୍ ଲେଟ୍ ହୋଇ ହୋଇ ଚାଲିଲା । ହାଇଦ୍ରାବାଦରେ ପହଞ୍ଚିବା ଆଗରୁ ମୁଁ କହିଲି, "ଆପଣ କଣ ଲଞ୍ଚ ଅର୍ଡ଼ର ଦେଇଚନ୍ତି- ଷ୍ଟେସନ ବାହାରେ ବଢ଼ିଆ ବିରିଆନି ମିଳେ । ଆମେ ଯେବେ ଗଲେ ବା ଆସିଲେ ସେଇଟା ଛାଡୁ ନାହିଁ । ଲେଟ୍‌ଥିଲେ ତାକୁ ଆଣି ରଖିଦେଇ ରାତିରେ ଖାଉ । ଏ.ସି. କମ୍ପାର୍ଟମେଣ୍ଟରେ ଖରାପ ହେବାର ଚାନ୍ସ ନାହିଁ ।" ସେ ତ କହିଥିଲେ ଆଗରୁ ପୁଅସହ ବାରମ୍ବାର ଏଇ ରାସ୍ତାରେ ଏଇ ଟ୍ରେନ୍‌ରେ ଯିବା ଆସିବା କରିଚନ୍ତି । କିନ୍ତୁ ପୁଅ ତାଙ୍କୁ ବିରିଆନି ଖୁଆଇ ନାହିଁ, ଏ କଥାଟା ବୋଧହୁଏ ଲୁଚାଇବାକୁ ଯାଇ କହିଲେ, "ତାକୁ ବିରିଆନି ଭଲ ଲାଗେ ନାହିଁ ।"

ଆମ ସହ ଆଉ ଜଣେ ଭଦ୍ରମହିଳାଙ୍କ ପରିଚୟ ମଧ ହୋଇଥିଲା । ସେ ଓଡ଼ିଆ ନ ହେଲେ ମଧ କଟକୀ ବଙ୍ଗାଳୀ । ସେ ବାହାହୋଇଚନ୍ତି ବମ୍ବେରେ । ତାଙ୍କ ସ୍ୱାମୀ କାମ କରନ୍ତି ଓ.ଏନ୍.ଜି.ସି.ରେ । ଯେଉଁ ତିନି ମାସ ସ୍ୱାମୀ ସମୁଦ୍ର ଭିତରେ ରହନ୍ତି ସେ ଚାଲି ଆସନ୍ତି କଟକ । ଫେରୁଚନ୍ତି ତାଙ୍କ ଛଅ ବର୍ଷର ପୁଅକୁ ନେଇ । ପୁଅଟି ଗେଲ ବସରର- ମହା ଜିଦିଆ । ମା' କଥାକୁ ଖାତିର୍ ନାହିଁ- ମା'ଟି ବିଚରା ବ୍ୟସ୍ତ ହୋଇ ପଡୁଥାନ୍ତି । ପୁଅକୁ ଖୁଆଇବାକୁ ଯାଇ ମା ଏକେବାରେ କାନ୍ଦ କାନ୍ଦ । ପୁଅ କଣପାଇଁ କେଜାଣି ରୁଷି ବସିଚି, ଖାଉ ନାହିଁ । ଯାହା ପଚାରିଲେ 'ନାହିଁ ।' ବିସ୍କୁଟ, ଫଳ, ପରଟା, ପାଉଁରୁଟି କିଛି ଖାଇବାକୁ ଚାହୁଁ ନାହିଁ । ସେତେବେଳକୁ ଦିନ ଦି'ଟା ବାଜିଲାଣି । ଆମେ ଆମପାଇଁ ବିରିଆନି ଆଣିଲୁ ଓ ତାଙ୍କ ମା' ପୁଅପାଇଁ ଗୋଟେ ଅଧିକା ଓ ଶ୍ରୀମତୀ ମହାପାତ୍ରଙ୍କପାଇଁ ମଧ ଗୋଟେ ନେଇ ଆସିଥିଲୁ । ପୁଅକୁ ସେଇ ବିରିଆନି ଖୁଆଇବାରେ କୃତକାର୍ଯ୍ୟ ହୋଇ ପାରିଥିବାରୁ ସେ ଆମ ପ୍ରତି କୃତଜ୍ଞ ହୋଇ, ଆମକୁ ଆଚାର, ସନ୍ଦେଶ ଓ କୋବି ଆଳୁ ଭଜା ସେଦିନ ରାତି ଏବଂ ତା'ପରଦିନ ମଧ ଯୋଗାଇଥିଲେ । ମାନେ ତାଙ୍କ ସହ ମଧ ଘନିଷ୍ଠତା ଜମି ଆସିଲା ।

ଶ୍ରୀମତୀ ମହାପାତ୍ର କିନ୍ତୁ ପିଲାଟିକୁ ଭୀଷଣ ଗାଳି ଦେଇଥିଲେ । "ଏ କ'ଣ ? ପୁଅଟା ମା'କୁ କଣ ଏମିତି ଦୂର ଦୂର ମାର୍ ମାର୍ କରୁଚି । ଶିକ୍ଷା କଣ ଏମିତି ?" ତା'ପରେ ପ୍ରାୟ ପାଞ୍ଚ ମିନିଟ୍ ପର୍ଯ୍ୟନ୍ତ ତାଙ୍କ ପୁଅର ଗୁଣ ଗାରିମାର ଉଦାହରଣ । କେତେବେଳେ ପିଲା ଯଦି ଦୁଷ୍ଟାମି କଲା କି କଥା ନ ମାନିଲା ପୁଣି ଆଉ ପାଞ୍ଚ ମିନିଟ୍ ପର୍ଯ୍ୟନ୍ତ ନିଜ ପୁଅର ନଜିର ଓ ଗୁଣଗାନ ।

ସତରେ ଆମେ ଭାବିଲୁ, ବମ୍ବେ ରହଣି ଭିତରେ ଶ୍ରୀମତୀ ମହାପାତ୍ରଙ୍କୁ ଦେଖା କରିବା ବାହାନାରେ ତାଙ୍କ ପୁଅ ବୋହୂ ସହ ପରିଚୟ କରିନେଲେ ଭଲ ହୁଅନ୍ତା । ଏତେ ବଡ଼ କମ୍ପାନୀର ଏତେବଡ଼ କର୍ମକର୍ତ୍ତା; କେତେବେଳେ କ'ଣ ଦରକାର ହେବ, ପରିଚୟଟା ରଖିଥିଲେ କ୍ଷତି କ'ଣ ? ଆମେ ଶ୍ରୀମତୀ ମହାପାତ୍ରଙ୍କୁ ତାଙ୍କ ପୁଅ ଠିକଣା ମାଗିଲୁ ।

ସେ ଦେଉଚି କହି ବେଶ୍ ଗୋଟେ ସୁନ୍ଦର ଦାମିକା ଚମଡ଼ା ହାତ୍‌ବେଗ୍ ଭିତରୁ କାଗଜ ସବୁ ଖୋଜିବାକୁ ଲାଗିଲେ। ଟିକିଏ ଖୋଜାଖୋଜି କରି କହିଲେ, ''ଦେବି। ଯା'ରି ଭିତରେ କେଉଁଠି ଅଛି, ମୁଁ ପରେ ବାହାର କଲେ, ଦେବି।'' ମଝିରେ ମଝିରେ ଆଉ ଥରେ ଦି'ଥର ଖୋଜି ମଧ୍ୟ ସେ କହୁଥାନ୍ତି, ଦେବି। ଏଇ ସବୁ ଏତେ ଏଣୁ ତେଣୁ କାଗଜ ଅଛି, ମୁଁ ବାହାର କରି ଦେବି। ମୋର ଗୋଟେ ଏଇଟା ବଡ଼ ବଦଭ୍ୟାସ। ସବୁ ଏଇ ବେଗ୍‌ରେ ଭର୍ତ୍ତି କରିଦେବି, ଆଉ ଦରକାର ବେଳେ ପାଉ ନ ଥିବି।''

ଗଲା। ଏମିତି ବଡ଼େ ପାଖେଇ ଆସିଲା। ସେତେବେଳକୁ ଟ୍ରେନ ପ୍ରାୟ ଛଅ ଘଣ୍ଟା ଡେରି। ଆମେ ପଚାରିଲୁ ''ଆପଣ କେମିତି ଯିବେ? ପୁଅ ତ ଆସି ପାରି ନ ଥିବେ ଡାକ୍ତରଖାନାରୁ।'' ସେ ଆମ ଆଡ଼କୁ ଚାହିଁ ଟିକିଏ ହସିବା ପରି କହିଲେ (ସତେ ଯେମିତି ଆମେ ଗୋଟେ ଆଶ୍ଚର୍ଯ୍ୟ କଥା କହୁଚୁ) ''ଦି'ଘଣ୍ଟା ପାଇଁ ଆସିପାରିବ ନାହିଁ? ଆପଣମାନେ ବ୍ୟସ୍ତ ହୁଅନ୍ତୁ ନାହିଁ। ବୋହୂ ଦେହ ନିହାତି ଖରାପ ଥିଲେ ମୋର ଜଣେ ପୁତୁରା ସେଇ ଭି.ଟି. ଷ୍ଟେସନ୍ ପାଖରେ ରହେ। ତାକୁ ସେ ଫୋନ୍ କରି ଦେଇଥିବ ନିଶ୍ଚେ; ତାକୁ ଧରି ମୁଁ ସିଧା ପହଞ୍ଚିଯିବି ନର୍ସିଂହୋମ୍‌ରେ। ସେଇଠୁ ତାକୁ ଟିକେ ଦେଖି ମୋ ନାତି ନାତୁଣୀ ଦି'ଟାପାଖକୁ ଧାଇଁବି- ସେମାନେ ଜଗି ବସିଥିବେ ସକାଳୁ।'' ଅଗତ୍ୟା ଆମେ ଚୁପ୍ ରହିଲୁ।

ଦାଦାର୍ ଷ୍ଟେସନରେ ଆମେ ଓହ୍ଲାଇବା ପୂର୍ବରୁ ପୁଣି ଯେତେବେଳେ ତାଙ୍କ ପୁଅର ଠିକଣା ମାଗିଲୁ ସେ ଆଉ ଥରେ ବ୍ୟସ୍ତ ହୋଇ ସେଇ ବ୍ୟାଗ୍ ଭିତରୁ ଖୋଜି ଖୋଜି ଟେଲିଫୋନ୍ ନମ୍ବରଟା ଦେଲେ। ଆଉ କହିଲେ, କାଲି ଫୋନ୍ କଲେ ଠିକଣା ସହ ଟ୍ରେନ ବସ୍ ରୁଟ୍ ଇତ୍ୟାଦି ସବୁ ଜଣାଇଦେବେ ଯେ, ଆମକୁ ଯିବାକୁ ସୁବିଧା ହେବ। ସେ ମଧ୍ୟ ଆମ ଦୋଇଁଙ୍କ ଠିକଣା ମାଗି ରଖିଲେ। କଥା ଦେଲେ ପୁଅ ବୋହୂ ନାତି ନାତୁଣୀଙ୍କୁ ଧରି ବୁଲି ଆସିବେ। ଆମେ ଥିବା ଭିତରେ ନିଶ୍ଚେ ଆସିବୁ ବୋଲି କଥା ଦେଇ ବିଦାୟ ନେଲୁ।

ଆମେ ଓହ୍ଲାଇ ଗଲୁ। ସେ ଭି.ଟି.ରେ ଓହ୍ଲାଇବେ। ଘରକୁ ଆସି ଧୁଆଧୋଇ ଖିଆପିଆ। କିଛି ସମୟପରେ ଭାବିଲି ଥରେ ତାଙ୍କ ପୁଅ ଘରକୁ ଫୋନ୍ କରି ଦେଖେ, ଭଦ୍ରମହିଳା ଠିକ୍ ପହଞ୍ଚିଲେ କି ନାହିଁ। ତାଙ୍କ ସହ ପରିଚୟ ହୋଇଚି ଯେତେବେଳେ ଭଦ୍ରମହିଳାଙ୍କ ବୋହୂଙ୍କ ଦେହ କିପରି ଅଛି ପଚାରିବା ମଧ୍ୟ ଆମର କର୍ତ୍ତବ୍ୟ। ଫୋନ୍ ଲଗାଇବା ବେଳକୁ ଦେଖିଲି ସେଇଟା ତାଙ୍କ ଅଫିସ ଫୋନ୍। ଅଫିସରେ ରାତିରେ ବା କିଏ ଧରିବ? ଯୋଗକୁ ତୃତୀୟଥର ବେଳକୁ କେହି ଜଣେ ଧରିଲା, ସେ ଚୌକିଦାର। କାହାରି ଘର ଫୋନ୍ ଜାଣି ନାଇଁ ବୋଲି ଶୁଣାଇଦେଲା ରୋକ୍‌ଠୋକ୍। ଏଣୁ ତେଣୁ

ଅନେକ କଥା କହିବାରୁ ଷ୍ଟେନୋ ଟେବୁଲ ଉପର କାଗଜରୁ ପଢ଼ିଲା ଦୁଇ ଚାରିଟା ଫୋନ୍ ନମ୍ବର। ଗୋଟେ ଅସୁବିଧା ଥିଲା ଯେ ଆମେ ତାଙ୍କ ପୁଅର ଭଲ ନାଁ ଜାଣି ନ ଥିଲୁ। ଖାଲି ଜାଣିଥିଲୁ 'ରମୁ'। ଭାବିଲୁ 'ରମୁ ମହାପାତ୍ର' ହୋଇଥିବ। କିନ୍ତୁ ରମୁ ମହାପାତ୍ର କ'ଣ ଭଲ ନାଁ ହୋଇଥିବ ? ସେଇଠୁ ଖାଲି ଆର. ମହାପାତ୍ର କହିଲି। ଖୋଜାଖୋଜି କରି ସେ ପ୍ରାୟ ପାଞ୍ଚ ମିନିଟ୍ ପରେ ନମ୍ବରତକ ମୂଳରୁ ପଢ଼ିବା ଆରମ୍ଭ କଲାରୁ ଆମେ ପାଇଲୁ। ତାଙ୍କ ଘରକୁ ଫୋନ୍ କଲାବେଳକୁ ଜଣେ ଭଦ୍ରମହିଳା ଧରିଲେ। ମୋ ଓଡ଼ିଆ କଥାର ଉତ୍ତରରେ ସେ ଇଂରାଜୀରେ ପଚାରିଲେ, ''କାହାକୁ ଦରକାର ?'' ତା'ପରେ ମରାଠି ଭାଷାରେ ସେ ତାଙ୍କ ସ୍ୱାମୀଙ୍କୁ କଣ କହିଲେ। ସେଇଠୁ ରମୁ ମହାପାତ୍ର ଆସି ଫୋନ୍ ଧରିଲେ। ଏବଂ ଓଡ଼ିଆରେ ପଚାରିଲେ କାହାକୁ ଖୋଜୁଚନ୍ତି ? ମୁଁ ନିଜର ପରିଚୟ, ଟ୍ରେନ୍‌ଯାତ୍ରା ଘଟଣାଟାକୁ କହି ଶ୍ରୀମତୀ ମହାପାତ୍ର ଘରେ ପହଞ୍ଚିଲେଣି କି ନାହିଁ ଏବଂ ତା ସହ ରମୁ ବାବୁଙ୍କ ସ୍ତ୍ରୀଙ୍କ ଦେହ ମଧ କିପରି ଅଛି ଜାଣିବାକୁ ଚାହିଁଲି।

ପ୍ରଥମେ ସେ କହିଲେ, ''ହଁ ଦେହ ଭଲ ହୋଇଗଲାଣି। ସାମାନ୍ୟ ଫୁଡ୍ ପଏଜନିଂ ରକମ ହୋଇଯାଇଥିଲା। ତିନିଦିନ ହେଲା ଘରକୁ ଫେରିଲେଣି। ତା'ପରେ କହିଲେ, ''ମା ତା'ହେଲେ ବାହାରି ଆସିଲା। ମୁଁ ବାରମ୍ବାର ମନା କରୁଚି ଆସିବା ଦରକାର ନାହିଁ।'' ମୁଁ ବ୍ୟସ୍ତ ହୋଇ କହିଲି ''ତା'ହେଲେ ଆପଣ ତାଙ୍କ ଆସିବା କଥା ଜାଣି ନାହାନ୍ତି, ବିଚରା ଷ୍ଟେସନରେ ଏକା, ଅସୁବିଧାରେ ପଡ଼ିଥିବେ।'' ତାଙ୍କ କଥା ଓ ସ୍ୱରରୁ ଯାହା ଜାଣିଲି, ମା' ବଡ଼ ଅସୁବିଧାରେ ପକାଉଚନ୍ତି ସେମାନଙ୍କୁ। କହିଲେ, ''ରାତିରେ ତାଙ୍କୁ ଷ୍ଟେସନରେ ଅସୁବିଧା କିଛି ହୋଇ ନ ଥିବ, କାରଣ ସେ ନିଶ୍ଚେ ଭି.ଟି. ପାଖରେ ରହୁଥିବା ଶରତ୍ ଭାଇଙ୍କୁ ଖବର ଦେଇଥିବେ ଆଗରୁ ଓ ତାଙ୍କରି ସହ ରହିଯାଇଥିବେ।'' ସ୍ତ୍ରୀ ମୋ ମୁହଁକୁ ବ୍ୟସ୍ତ ହୋଇ ଚାହିଁ ସବୁ ଶୁଣୁଥିଲେ। ମୁଁ ନମସ୍କାର ଜଣାଇ ଫୋନ ରଖୁ ରଖୁ ସ୍ତ୍ରୀଙ୍କୁ ଚାହିଁଲି। ଆମେ ଦୁଇ ଜଣ ଏକା କଥା ଭାବୁଥିଲୁ- ''ବିଚାରୀ ଶ୍ରୀମତୀ ମହାପାତ୍ର।''



# 'ଆମ ଦଦେଇ'

'ଆମ ଦଦେଇ' କହିଲେ ଜଗତ୍‌ର ଛାତି ଫୁଲି ଉଠେ। ତା' ଆଖିରେ ଦେଖାଦିଏ ସତେ ଯେପରି ସେ ଇହଲୋକ ନୁହେଁ ସ୍ୱର୍ଗଲୋକର କାହାରି ବିଷୟରେ କହୁଛି। ସାଙ୍ଗସାଥୀ ତ ସାଧାରଣ କଥା, ସାର୍‌ମାନଙ୍କ ସହ ହେଉ କି ଘରକୁ ଆସିଥିବା ବାପାଙ୍କ ବନ୍ଧୁମାନଙ୍କ ସହ ହେଉ ଆଠ ବର୍ଷ ବୟସର ଜଗତ୍ ଯେତେବେଳେ ଦଦେଇଙ୍କ କଥା କହେ ସେ ଭାବେ ଯେ ଦଦେଇଙ୍କ ସାମ୍ନାରେ ଏମାନେ ସମସ୍ତେ କେତେ ନଗଣ୍ୟ।

ଅବଶ୍ୟ ଏପରି ଚିନ୍ତାଧାରା ହେବା ସ୍ୱାଭାବିକ। ଇଏତ ମାତ୍ର ଆଠ ବର୍ଷର ପିଲା, ଯାହା ଶୁଣୁଚି ବା ଶୁଣିଚି ସେଇଥିରେ ତା ମନ ପ୍ରଭାବିତ ହୋଇଯାଉଚି। କିନ୍ତୁ ଆମରି ଭିତରେ ବନ୍ଧୁ ଓ ପରିଚିତ ଅଛନ୍ତି, ଯାହାଙ୍କର ଏହି ଦଦେଇ ସ୍ଥାନୀୟ ବ୍ୟକ୍ତିଟିଏ ସହ ସାମାନ୍ୟତମ ସମ୍ପର୍କଟା ଜୀବନରେ ସବୁଠାରୁ ମହନୀୟ ଘଟଣା। ସାମାନ୍ୟ ପରିଚୟରେ ଏପରି ଭାବରେ ତାଙ୍କ ନାଁକୁ ବାରମ୍ବାର ଉଚ୍ଚାରଣ କରି କଥା କହନ୍ତି, ଯେପରି ନିଜର ବା ନିଜ ବଂଶରେ ଗର୍ବ କରିବାର କିଛି ନ ଥିଲେ କ'ଣ ହେବ, ଏପରି ଲୋକଙ୍କ ସହ ପରିଚୟ ଦ୍ୱାରା ସେ ନିଜେ କୃତ କୃତ୍ୟ; ତାଙ୍କ ଜୀବନ ସାର୍ଥକ।

ଜଗତର ଦଦେଇ ହେଲେ ଓଡ଼ିଶା ସରକାରଙ୍କ ଜଣେ ସବୁଠାରୁ ଉଚ୍ଚ ପାଢ଼ିର ଅଫିସର୍। ଜଗତର ବାପା ଅବଶ୍ୟ ଜଣେ ସରକାରୀ କର୍ମଚାରୀ, ମାତ୍ର କଲେଜର ରିଡର୍। ଘର ମିଳିଚି, ବହୁ ବର୍ଷ ଭଡ଼ା ଘର ପରେ, ବି.ଜେ.ବି. କଲେଜ ପାଖରେ ଫ୍ଲାଟରେ। ଦିନସାରା ସାଇକେଲକୁ ତଳ ତାଲାରେ ଚାବି ପକାଇ ରଖିବାକୁ ପଡ଼େ, ଆଉ ରାତିରେ

ଷିଡ଼ି ଉପରକୁ ଉଠାଇ ନ ଆଣିଲେ ବିପତ୍ତି। ବାପା ସାଇକେଲରେ ଯିବା ଆସିବା କରନ୍ତି କଲେଜ ଆଉ ବଜାର।

ହେଲେ ଦଦେଇ। ତାଙ୍କ ବଦଳି ବାଲେଶ୍ବରରୁ ଭୁବନେଶ୍ୱର ହେଲାବେଳକୁ, ତାଙ୍କ ଜିନିଷ ପତ୍ର ନ ପହଞ୍ଚୁଣୁ ଘରସବୁ ରଙ୍ଗ ହୋଇସାରିଥିଲା। ଚାରିଟା ଶୋଇବା ଘର, ବସିବା, ଖାଇବା, ଅଫିସ, ରୋଷାଇ ଏମିତି ମିଶି ଆଠଟା ରୁମ୍। ଖୁଡ଼ୀ ମାସେ ଆଗରୁ ଆସି କେଉଁ ରୁମ୍ କଣ ରଙ୍ଗ ହେବ ସବୁ ଠିକ କରିଦେଇଥିଲେ। ଜଗତ୍ ଏ ରୁମ୍‌ରୁ ସେ ରୁମ୍ ଧାଇଁଥିଲା। ଘରକୁ ଜିନିଷ ଆସିଗଲା ପରେ ପ୍ରଥମ ଯେଉଁଦିନ ସେ ଘରକୁ ଗଲା 'ବାପ୍‌ରେ ଘରେ କି ଜିନିଷ।' ଅଫିସ ଘରେ ବି ସୋଫା ସେଟ୍। ତାଙ୍କ ଷ୍ଟେନୋପାଇଁ ଯେଉଁ ଟେବୁଲ-ଚେୟାର ସେଇଟା ତା' ବାପାଙ୍କ ପଢ଼ା ଟେବୁଲ୍‌ଠୁ ଲମ୍ବା ଓସାରରେ ଦୁଇ ଗୁଣ, ପୁଣି ଚେୟାରଟାରେ ଏତେ ମୋଟା ଗଦି। ଦଦେଇଙ୍କ ଚେୟାର ଟେବୁଲ କଥା ତ ଛାଡ଼! ଆଖି ଖୋସି ହୋଇଯିବ!

ସେଇଠୁ ଘର ଆଡ଼ିକି ପଶିଆସିଲେ ଡ୍ରଇଂରୁମ୍। ସେଇଟା ତ ଗୋଟେ ସିନେମାରେ ଦେଖା ଷ୍ଟୁଡିଓ ପରି। ସେଠି ପାଦ ଦେବାକୁ ଡର ମାଡ଼େ। ଦାମୀ କାର୍ପେଟ ଆଉ ଏଠି ସେଠି ଦାମୀ କାଚ ଜିନିଷ ସବୁ। ବାପ୍‌ରେ ବାପ୍! ସେ ଘରଆଡ଼କୁ ମୁହାଁଇବା ଅର୍ଥ ବିପଦକୁ ଡାକି ଆଣିବା। କେଉଁଠି କାଳେ ହାତବାଜି କ'ଣ ଭାଙ୍ଗିଯିବ!

ଖାଇବା ଘର ବି ତଦ୍ରୂପ। ତେବେ ସେ ଟେବୁଲ ଚେୟାରରେ ବସି ଖାଇବା ସାହସ କରି ପାରେ ନାହିଁ ଜଗତ୍; କି ତାକୁ କେହି କେବେ ଡାକି ବି ନାହାନ୍ତି। ଦିନେ ଖାଇବା ଛୁଟିରେ ସ୍କୁଲ ଫେରନ୍ତା ରାସ୍ତାରେ ଖରାବେଳେ ପଶିଗଲାବେଳକୁ, ଦଦେଇ ବସି ଖାଉଥିଲେ। ବାପ୍‌ରେ, ସେ ଖାଇବା ଷ୍ଟାଇଲ ଦେଖିଲେ ଜାଣିବ ଆମ ଦଦେଇ କେମିତି ମିଜାଜ୍‌ର ଲୋକ। କଣ୍ଟା ଚାମଚ, ଛୁରୀ ସବୁ ଧରି ସେ ଖାଉଥାନ୍ତି - ତାଙ୍କ ହାତରେ କି ଓଠରେ ଅଇଁଠା ଲାଗେନି, ସେ ଖାଇସାରି ଉଠିଗଲେ ରୁମାଲରେ ମୁହଁପୋଛି। ଜଗତ ଏଡ଼େ ବଡ଼ ବଡ଼ ଆଖି କରି ଚାହିଁଥିଲା ତା' ଦଦେଇଙ୍କୁ।

ଶୋଇବା ଘରେ ପଶିବା କେବେ ସମ୍ଭବ ହୋଇ ନ ଥିଲା। ଯେଉଁଦିନ ଦଦେଇଙ୍କ ଜ୍ବର ଶୁଣି ନନାଙ୍କ ସହ ଦେଖିବାକୁ ଆସିଥିଲା ଜଗତ୍, ଶୋଇବା ଘରକୁ ପଶିଯାଇ ଚମକି ପଡ଼ିଥିଲା ସେ। ଅନ୍ଧାରିଆ ଅନ୍ଧାରିଆ ଭୂତଖାନା ରକମ ଦେଖାଯାଉଥିଲା ଘରଟା। ବିଛଣା ଉପରେ ବସିପଡ଼ିବାବେଳକୁ ତାକୁ ଲାଗିଲା ବିଛଣାଟା ତାକୁ ଧରି ଉପର ତଳ ଦୋଳି ଖେଳୁଚି। ବାଃ ବେଶ୍ ମଜା ଲାଗିଲା। ଦଦେଇଙ୍କ ଏମିତି ବିଛଣା ନା!

ଦଦେଇଙ୍କ ଦେହ ଖରାପ ବୋଲି ଦୁଇଟା ଡାକ୍ତର ଦ୍ୱାର ମୁହଁରେ ଛିଡ଼ା ହୋଇଥିଲେ। ବୋଉର ଥରେ ଭୀଷଣ ଶ୍ୱାସ ଉଠିଥିଲା ଯେ ଜଗତ୍ ଡାକ୍ତରଙ୍କ ଘରକୁ ଧାଇଁଥିଲା। ଡେରି ହେବାରୁ ତା' ପଛେ ପଛେ ନନା ବି ଧାଇଁଗଲେ। ଡାକ୍ତରଙ୍କ ଦ୍ୱାରେ ବାପ

ପୁଅ ଦୁଇ ଜଣ କାକୁତି ମିନତି ହୋଇ କେତେ କଷ୍ଟରେ ଦୁଇ ମିନିଟ୍‌ପାଇଁ ଡାକ୍ତରଙ୍କୁ ଆଣିଥିଲେ। ଏଠି କିନ୍ତୁ ଦୁଇଟା ଡାକ୍ତର ଦୁଇ ଘଣ୍ଟା ହେଲା ଦ୍ୱାର ମୁହଁରେ ଛିଡ଼ା ହୋଇଥିଲେ; କାରଣ ରୋଗୀ 'ଆମ ଦଦେଇ' ସେତେବେଳେ ଫୋନ୍ କରିବାରେ ବ୍ୟସ୍ତ ଥିଲେ।

ନନା ଅପେକ୍ଷାରତ ଡାକ୍ତରଙ୍କ ସହ ଗପ କରିବା ଭିତରେ ଜଗତ୍ ବଗିଚାକୁ ବାହାରିଗଲା। ବ୍ୟସ୍ତ ହୋଇ ଜଣେ ବଗିଚା-ବାବୁ ତିନି ଚାରିଟା ମାଳିକୁ ଡାକି ଗାଳି ଗୁଲଜ କରୁଥିଲେ। କାହିଁକି ଫୁଲ ଫୁଟିନି ଏପର୍ଯ୍ୟନ୍ତ। ଏତିକିବେଳେ ବୋଧହୁଏ ଜଣେ ବଡ଼ ବଗିଚା ବାବୁ ଆସି ପହଞ୍ଚିଗଲେ। ତାଙ୍କ ଗାଡ଼ି ପାଖକୁ ସାନ ବଗିଚା ବାବୁ ଧାଇଁଯାଇ ପ୍ରଣାମ କଲାବେଳକୁ ବଗିଚା ବାବୁ ଚାରିଆଡ଼େ ନଜର ପକାଇ କହିଲେ "ସାର୍‌ଙ୍କ ଦେହ କିପରି ଅଛି?" ବ୍ୟସ୍ତ ହୋଇ ଗାଡ଼ିରୁ ଓହ୍ଲାଇ ବାରଣ୍ଡାକୁ ଆସିଲେ ସିନା, ଆଉ ଭିତରକୁ ନ ଯାଇ ସେଇଠି ବସି ପଡ଼ିଲେ। ସାନ ବଗିଚା ବାବୁ କୃତକୃତ୍ୟ ହୋଇ ସେଇ ବାରଣ୍ଡା ତଳେ ଛିଡ଼ା ହୋଇ ବଗିଚାରେ ଯା' ଭିତରେ କଣ ଲଗା ଗଲା ନ ଗଲା ହିସାବ ଦେଇ ଚାଲିଥିଲେ। ଜଗତ୍‌ର ଛାତି ଏଡ଼େ ମୋଟ ହୋଇଗଲା। ଭାବିଲା- "ଏଇ ଆମ ଦଦେଇ।"

ନନା ସକାଳଟାରୁ କୋଡ଼ି ଧରି ଆସେଇ ଥିବେ ଆଉ ସ୍କୁଲରୁ ଆସିଲାବେଳକୁ ବୋଉ ବାଲଟି ଧରି ପାଣି ଦେଉଥିବ। ପୁଣି ବେଳେ ବେଳେ ଜଳଖିଆ ଦେବା ଆଗରୁ ପାଣି ଦୁଇ ବାଲ୍‌ଟି ବାଇଗଣ କି ଲଙ୍କା ଗଛରେ ଢାଳି ଦେବାକୁ ଅର୍ଡର ଦେବ। ଦେଖ ଆମ ଦଦେଇଙ୍କୁ, ସେ ଘରେ ଶୋଇଚନ୍ତି- ତାଙ୍କ ବଗିଚାରେ କ'ଣ ଲଗା ହେଲା ନ ହେଲା ବୁଝିବାକୁ ମାଳୀ, ତାଙ୍କୁ ଜଗିବାକୁ ପଛରେ ବାବୁ ପୁଣି ତାଙ୍କ ଉପରେ ବଡ଼ ବାବୁ ସବୁ ଆସି ତଦାରଖ କରୁଚନ୍ତି।

"ଏଇ ହେଲେ ଆମ ଦଦେଇ।"

ସ୍କୁଲ ସାଙ୍ଗମାନଙ୍କୁ ବୁଝାଇବାକୁ ଯାଇ ଜଗତ୍ ସବୁ କଥା ସାରିପାରେ ନାହିଁ। କେମିତି ତିନି ତିନିଟା ଗାଡ଼ି ଦଦେଇଙ୍କପାଇଁ ସରକାର ଖଞ୍ଜି ଦେଇଚନ୍ତି। ଦଦେଇ ଗୋଟେ ଗାଡ଼ିରେ ଅଫିସ ଗଲେ, ପିଲାଙ୍କୁ ସ୍କୁଲରେ ଛାଡ଼ିବାକୁ ଓ ବଜାର କରିବାକୁ କି ଲେଡ଼ିଜ୍ କ୍ଲବକୁ ଯିବାକୁ ଆଉ ଗାଡ଼ି ଦୁଇଟା ଧାଁ ଧପଡ଼ କରୁଥାନ୍ତି ଦିନସାରା।

ଦଦେଇଙ୍କ ରାଗିବାର କେବେ ଶୁଣିଚ? କେବେ ସେ ନନାଙ୍କ ପରି ପାଟି କରନ୍ତିନି କାହାକୁ। ତାଙ୍କ ଷ୍ଟେନୋ, ପି.ଏ. ଯିଏ ଯେମିତି ଆସନ୍ତି ତାଙ୍କୁ ଦାନ୍ତ ଚିପି ଚିପି ପଦେ ଦି'ପଦ ମୁହଁ ତଳକୁ କରି କଥା କହନ୍ତି। କେବେ କେମିତି ଗମ୍ଭୀର ସ୍ୱରରେ ଝାଡ଼ିଦେଲେ ସେମାନେ ମୁଣ୍ଡ ତଳକୁ ଢାକି ମୁତି ପକାଇବା ଅବସ୍ଥାରେ ବାହାରି ଆସନ୍ତି; ଆଉ ଧାଁ ଧପଡ଼ ଲଗାଇ ଦିଅନ୍ତି। ଫୋନ୍ ଧଇଲେ ଆମ ଦଦେଇ ଖାଲି ୟେସ୍ ନୋ କରି ଏମିତି ଧଡ଼୍ ଧାଡ଼୍ କରି ଫୋନ୍ ରଖି ଦିଅନ୍ତି ଯେ ଫୋନ୍‌ବାଲା ବି ଡରିମରି ରହୁଥିବ।

''ଏଇ ହେଲେ ଆମ ଦଦେଇ।''

ଖେଳ କଥା ହେଲେ ଆମ ଦଦେଇ, ପଢ଼ା କଥା ହେଲେ ଆମ ଦଦେଇ- ଜୀବନର ଯେତେ ପ୍ରକାର ପଥ ଅଛି ସବୁଥିରେ 'ଦଦେଇ' ପରି ଆଦର୍ଶ ମଣିଷଟା ଛଡ଼ା ଜଗତ୍ ଆଉ କିଛି ଦେଖି ନାହିଁ।

ଦିନେ ମିଳିଗଲା ଜଗତ୍‌କୁ ଗୋଟେ ପୂରାଦିନର ରହଣି ଦଦେଇଙ୍କ ଘରେ। କାଲି ସକାଳୁ ନନା ସମସ୍ତଙ୍କୁ ନେଇ ଗାଁକୁ ଯିବେ, ସେଠି ପଡ଼ିଶା ଘର ରମିନାନୀ ବାହାଘରକୁ। ପଅରଦିନ ବାରଟା ସୁଦ୍ଧା ଫେରି ଆସିବେ। ଏଇ ସମୟଟା ଜଗତ୍ ରହିବ ଦଦେଇଙ୍କ ଘରେ। ଦଦେଇଙ୍କ ଘରେ ପହଞ୍ଚାଇ ଦେଇ ବାପା ବୋଉ ରାତି- ବସ୍ ଧରିଲେ। ରାତିରେ ଜଗତ୍‌କୁ ନିଦ ହେଲାନି। ଗାନ୍ଧୀ, ନେହେରୁ ଆଉ ଦଦେଇ ଆସି ପ୍ରଥମ ସ୍ୱପ୍ନରେ ଠିଆହେଲେ। ମଝିରେ କେତେବେଳେ କପିଳ ଦେବ, ମାରାଡୋନା ସହ ମଧ୍ୟ ଖେଳୁଥିବାର ଦେଖିଲାପରି ମନେ ପଡ଼ିଲା। ପୁଣି ଭୋର୍‌ବେଳକୁ ଦଦେଇ ଠିକ୍ କୃଷ୍ଣଙ୍କ ପରି ମୁକୁଟ ପିନ୍ଧି ଗୋଟେ ଏରୋପ୍ଲେନ୍ ଚଳାଉଥିବାର ସ୍ୱପ୍ନ ଦେଖୁ ଦେଖୁ ସକାଳୁ ଡେରିପର୍ଯ୍ୟନ୍ତ ଶୋଇ ପଡ଼ିଥିଲା ଜଗତ୍।

ଡେରିରେ ଉଠିଲାବେଳକୁ ଘରେ ସମସ୍ତେ ଯେ ଜୁଆଡ଼େ ବ୍ୟସ୍ତ। ନିଦୁଆ ନିଦୁଆ ଆଖିରେ ସେ ବାହାରକୁ ଆସି କାନ ପାରିଲା, ଶୋଇବା ଘର କବାଟ ଖୋଲାଥିଲା। ଦଦେଇଙ୍କ ଫୋନ୍ ବାଜିଲା। ଦଦେଇ ଫୋନ୍‌ରେ କାହାସହ କଥା ଆରମ୍ଭ କଲେ। ହଠାତ୍ ଜଗତ୍ ଚମକି ପଡ଼ିଲା। ତା' ସବୁ ନିଦ ଛାଡ଼ିଗଲା। ଫୋନର ପ୍ରଥମ ପଦରେ ସେ ଚକିତ ହୋଇ ବେଶ୍ କାନଡେରି ଶୁଣିବାକୁ ଲାଗିଲା। ଦଦେଇ କହୁଥିଲେ, ''ସାର୍ ସାର୍, ୟେସ୍ ସାର୍, ହଁ ସାର୍, ଆଜ୍ଞା ସାର୍, ସାର୍, ସାର୍, ୟେସ୍ ସାର୍।'' ଜଗତ୍ ଘର ଭିତରକୁ ପଶିଗଲା। ଆର ପଟରୁ ସ୍ୱରଟା ବେଶ୍ ବଡ଼ ପାଟିରେ ଧମକ୍ ଦେଲାପରି ଶୁଣା ଯାଉଥିଲା। ପୁଣି ଦଦେଇ କହୁଥିଲେ- ''ନାଇଁ ସାର୍, ସାର୍, ନାଇଁ ସାର୍, ନାଇଁ ସାର୍, ସାର୍ ସାର୍ ସାର୍ ସାର୍ ସାର୍.....।

ଜଗତ ଘର ଭିତରୁ ଧୀରେ ଧୀରେ ବାହାରି ଆସିଲା। ବାରଣ୍ଡାରେ କଳାପିମ୍ପୁଡ଼ି ମେଞ୍ଚାଏ ଗୋଟେ ଖମ୍ବ ତଳେ ଜମାଟ ବାନ୍ଧିଥିଲେ। ମନ ଆଉ କାନ ଘର ଭିତରେ, ସେ କିନ୍ତୁ ସେଇଠି ଛିଡ଼ା ହୋଇ ସେଇ ପିମ୍ପୁଡ଼ି ଦଳକୁ ଗୋଡ଼ରେ ଚକଟି ଯାଉଥିଲା। ଜଗତ୍- ଭିତରୁ ଶୁଭା ଯାଉଥିଲା, ''ସାର୍, ସାର୍, ୟେସ୍ ସାର୍, ନୋ ସାର୍, ସାର୍, ସାର୍, ସାର୍, ସାର୍...।



# ମା

ସ୍ତ୍ରୀ ଲୋକଟିଏ, କାଖରେ ସାତ ଆଠ ମାସର ପିଲାଟିଏ। ଲୁଗା ସନ୍ଧିରେ ମୁହଁ ଲୁଚାଇଥିବା ଚାରି ପାଞ୍ଚ ବର୍ଷର ଝିଅଟିକୁ ନେଇ ବାରଣ୍ଡାର ଗୋଟିଏ କଡ଼କୁ ଠିଆ ହୋଇଥିଲା। ଆଖିରୁ ତାର ଲୁହ, ଜଣାପଡୁଥିଲା ବୋହି ବୋହି ଶୁଖି ଯାଇଚି। ନାଲି ଆଖି ତଥାପି ପାଣିଚିଆ ଦେଖାଯାଉଥିଲା ଦୂରରୁ। ମୁଁ ପୋଲିସ ଷ୍ଟେସନ କଡ଼ରେ ଗାଡ଼ି ରଖି ଓହ୍ଲାଇ ଆସୁ ଆସୁ ଲକ୍ଷ୍ୟ କରୁଥିଲି ଏଇ ସ୍ତ୍ରୀ ଲୋକଟିକୁ।

ବୟସ ହୁଏତ ତିରିଶ ଡେଇଁ ନ ଥିବ, ହେଲେ ଚାଳିଶ ଉପରକୁ ପରି ଦେଖାଯାଉଚି। ତାକୁ ଦେଖି ଦେଖି ମୋର ସକାଳୁ ସକାଳୁ ପୋଲିସ ଷ୍ଟେସନ ଧାଇଁବା କଥା ମନେପଡ଼ିଗଲା। ଘରୁ ବାହାରିବା ଆଗରୁ ଏସ୍.ପି. ସାହେବଙ୍କୁ ଫୋନ କରି ଦେଇଥିଲି। ସେ କହିଥିଲେ, ଇନ୍ସପେକ୍ଟରଙ୍କୁ ସେ କହି ଦେଇଥିବେ। ଯାଇ ଏଫ୍.ଆଇ.ଆର୍‌ଟା ଦେଇ ଦେବା କଥା। ମୁଁ ପାହାଚରେ ପହଞ୍ଚିବା ଆଗରୁ ଇନ୍ସପେକ୍ଟର ସାହେବ ଆଗେଇ ଆସି ନମସ୍କାର କଲେ ଏବଂ ଉତ୍ସୁକତା ଦେଖାଇ, 'କଣ ହେଲା ସାର୍' ବୋଲି ବ୍ୟସ୍ତତା ଦେଖାଇଲେ।

ମୁଁ ସେଇଠି ଖରାରେ ଠିଆ ହୋଇ କହିଲି ଘଟଣାଟା। 'ସ୍ତ୍ରୀ ଲୋକଟିଏ ଆମରି ଘରେ କାମ କରେ। ଦିନରେ ଦି'ଥର, ସକାଳୁ ଆଉ ଚାରିଟାବେଳକୁ ଆସି ଘର ଓଳାଏ, ବାସନମାଜେ, ଲୁଗା ଧୋଇ ଦେଇଯାଏ। କିନ୍ତୁ ସବୁଦିନେ ତାର ଆଖିରେ ଆଖିଏ ଲୁହ। ଆଜି ସ୍ୱାମୀ ପିଟିଲା ତ କାଲି ପୁଅ ଠେଲିଦେଇ ତଳେ ପକାଇ ତା' କାନିରୁ ପଇସା ନେଇ ପଳାଇଲା। ଏମିତି ସମସ୍ତଙ୍କ ଘରେ ତ ଲାଗି ରହିଚି। ଏଣୁ ଆମର ବିଶେଷ

କିଛି କରିବାର ନ ଥିଲା। ବରଂ ମୋ ସ୍ତ୍ରୀ ତା' କାନ୍ଦ ଶୁଣି ଶୁଣି ବିଚଳିତ ହୋଇ ମୋ ପାଖରେ ବ୍ୟସ୍ତ ହେଲେ, ମୁଁ ଗାଳି ଦେବା ପରି ତାଙ୍କୁ ଆକଟ କରେ ଯେ ତମେ ଏମାନଙ୍କ କଥାରେ ପଶିବା ଉଚିତ ନୁହେଁ। କିନ୍ତୁ ଏମିତି ଦିନ ନାହିଁ ଯୋଉଦିନ ସିଏ ତାର ଦୁଃଖ ଆସି ନ ବଖାଣିଚି, ଥାଉ ସେଇଟା ଆସି ମୋ କାନରେ ନ ପଡ଼ିଚି। ଏ ସବୁକୁ ମୁଁ ଜମା ଶୁଣୁ ନ ଥିଲି। ହେଲେ ଗତ ତିନିଦିନ ଧରି ଅବସ୍ଥା ଏମିତି ହେଲା ଯେ ମୋତେ ବାଧ ହୋଇ ପୋଲିସରେ ଖବର ଦେବା ଦରକାର ପଡ଼ିଲା।

ଯା' ଭିତରେ ଟେବୁଲ ଗୋଟେ ଓ ତିନିଟା ଚେୟାର ଆସି ଖରାରେ ପଡ଼ି ଯାଇଥିଲା। ଏ ବର୍ଷ ଯାହା ଶୀତ ପଡ଼ିଚି, ସବୁ ଅଫିସ ସକାଳୁ ଏମିତି ବାରଣ୍ଡା କି ଅଗଣା ଖରାରେ ଚାଲିଛି। ପୋଲିସବାଲାଙ୍କ ଅବସ୍ଥା ତ ସବୁଦିନେ ଏମିତି। ଦିନରେ ଚବିଶ ଘଣ୍ଟା ଏଠି କିଛି ନା କିଛି କାମ ଲାଗିଚି। ଏଣୁ ଶୀତଦିନରେ ଖରାରେ ଆଉ ଖରାଦିନରେ ରାତିରେ ବାହାରେ ଟେବୁଲ ଚେୟାର ବ୍ୟବସ୍ଥାଟା ପ୍ରାୟ ସବୁ ପୋଲିସ ଷ୍ଟେସନରେ ଥାଏ। ବସୁ ବସୁ ଚା ପହଞ୍ଚିଗଲା। ଚା' ଖିଆ ବେଳକୁ ହଠାତ୍ ଗୋଟେ ଅଜବ ଘଟଣା ଘଟିଲା।

ସେ ସ୍ତ୍ରୀ ଲୋକଟି ପାଟି କରି ଉଠିଲା- ''କାହିଁକି, ମୁଁ କଣ ମଣିଷ ନୁହେଁ? ମୁଁ କାହିଁକି ଏଇଠି ଘଣ୍ଟା ଘଣ୍ଟା ଧରି ଛିଡ଼ା ହୋଇ କାନ୍ଦୁଥିବି? ତମେ ସେଇଠି ବସି ଚା' ଖାଉଚ, ଗପ କରୁଚ, ମୋ କଥା ଶୁଣିବାକୁ ତମକୁ କାହାକୁ ଡର ନାହିଁ?'' ମୁଁ ବ୍ୟସ୍ତ ହୋଇ ଇନିସ୍‌ପେକ୍ଟର ବାବୁଙ୍କ ମୁହଁକୁ ଚାହିଁଲି। ତାଙ୍କ ମୁହଁରେ ତା'ପାଇଁ କିଛି ବ୍ୟସ୍ତତା ନ ଥିଲା- ବରଂ ମୁଁ ବସି ଚା' ଖାଉଥିବାରୁ ଏବଂ ସ୍ତ୍ରୀ ଲୋକଟି ଚା' ଖାଇବା ବିଷୟରେ ପଦେ କହି ଥିବାରୁ ସେ ଅପ୍ରସ୍ତୁତ ଅନୁଭବ କରୁଥିଲେ। ଭିତର ଆଡ଼କୁ ପାଟି କରି କହିଲେ- ''ସାମଲ, ଯା କଥା କଣ ଶୀଘ୍ର ବୁଝି ବିଦା କରିଦେଲୁ।''

ମୁଁ ତଥାପି ଉତ୍ସୁକ ହୋଇ ତାଙ୍କ ଆଡ଼କୁ ଚାହିଁ ରହିଲି ପ୍ରଶ୍ନବାଚକ ଭଙ୍ଗୀରେ। ମୁଁ ଏସ୍.ପି.ଙ୍କ ଲୋକ, ଏଣୁ କଥାଟା ମୁଁ କାଳେ ଭୁଲ୍ ବୁଝିବି ଓ ପରେ କାହାକୁ କଣ ରଙ୍ଗ ଦେଇ କହିବି ଏଣୁ ଗୋଟେ କିଛି ବୁଝାଇ ଦେବା ଦରକାର ବୋଲି ସେ ଆରମ୍ଭ କଲେ- ''ସେଇ ଏକା କଥା। ତାକୁ ତା ଦିଅର କୁଆଡ଼େ ବାଡ଼େଇଚି। ତା' ସ୍ୱାମୀ ଛଅ ମାସ ହେଲାଣି କୁଆଡ଼େ ପଳେଇଚି।'' ଏତକ କହି ତା' ବିଷୟଟା ଶେଷ କରି ମୋ କଥାଟାରେ ମନ ଦେଲେ। ପଚାରିଲେ- ''ସାର୍ କଣ ଏଫ୍.ଆଇ.ଆର୍. ଲେଖିବି ନା ତା ସ୍ୱାମୀକୁ ପୋଲିସ ପାଠ ଦି'ପଦ ପଢ଼ାଇବାର ବନ୍ଦୋବସ୍ତ କରିଦେବି?'' ଟିକିଏ ରହି କହିଲେ- ''ଆପଣ ଯାହା କହିବେ।''

ସ୍ତ୍ରୀ ବ୍ୟସ୍ତ କରୁଥିଲେ ଦି'ଦିନ ହେଲା, ଆଜି ସକାଳୁ ଆସି ପୁଣି ବିହ୍ୱଳଭାବେ କନ୍ଦାକଟା କଲାରୁ ସିନା ଧାଇଁ ଆସିଲି; କିନ୍ତୁ ଏଫ୍.ଆଇ.ଆର୍. ଦେବାକୁ କିଏ କ'ଣ ବା ମୁଁ ଜାଣିଚି ତାଙ୍କ ବିଷୟରେ। ତା ସ୍ୱାମୀ ତାକୁ କାହିଁକି ମାରପିଟ କରୁଚି ସେ

କଥା କଣ ମୁଁ ବୁଝିଚି। ଅବଶ୍ୟ ସ୍ତ୍ରୀ ଲୋକଟି ନିରୀହ, 'ମାଛିକୁ ମ କହିବା ଲୋକ ନୁହେଁ।' ଏଇଥିପାଇଁ ଆମର ବେଶୀ ଦରଦ। ମୁଁ କହିଲି- ''ହଁ ସେଇଆ ହେଉ। ତାଙ୍କ ଘରର ଭିତର କଥାଟା ତ ଆମେ ଜାଣିନୁ, ଏଣୁ ବୁଝାବୁଝି କରି ଦେଖିବେ କଣ କରାଯାଇପାରିବ।''

ବିଦାୟ ନେଇ ଗାଡ଼ିକୁ ଉଠିବାବେଳକୁ ଶୁଣୁଥିଲି, ଜଣେ ସବ୍‌ଇନ୍ସପେକ୍ଟର ବାବୁ କହୁଥିଲେ- ''ଇଆଡୁ ଗଲାବେଳକୁ ଠେଙ୍ଗା ଖଣ୍ଡେ ନେଇ ଯାଇଥିବୁ, ନ ହେଲେ ସେଠି ତ ଦିଅରକୁ ଧଇଲାବେଳକୁ, ହାତରେ ବାଡ଼ି ନ ଥିବ।'' ସ୍ୱରରେ ତାଙ୍କର ବ୍ୟଙ୍ଗ, ଅନାଇ ଦେଖିଲି ଆଖି ଆଉ ଓଠରେ ମଧ। ଆଉ ଜଣେ ଦି'ଜଣ ଖାକି ପିନ୍ଧା ଲୋକ ସହ ବାହାର ଲୋକ କେତେଜଣ ସେଇ ବାରଣ୍ଡା ବେଞ୍ଚରେ ବସିଥିଲେ, ସମସ୍ତେ ସେଇ ସ୍ତ୍ରୀ ଲୋକଟିଆଡ଼କୁ ଚାହିଁ ହସିଦେଲେ।

ସ୍ତ୍ରୀ ଲୋକଟି ହଠାତ୍ ଛୋଟ ପିଲାଟିକୁ ଝିଅ ପାଖରେ ବସାଇ ଦେଇ ତଳକୁ ଓହ୍ଲାଇ ଆସି ଇନ୍ସପେକ୍ଟର ବାବୁଙ୍କ ହାତକୁ ଧରି ଟାଣି ନେବାପରି କହିଲା- ''ଆଇଲ ବାବୁ, ଆଇଲ। କଣ ଭାବୁଚ କି ତମେ ମୋତେ। ଏମିତି କଥା କାହିଁକି କହୁଚ? ତମକୁ ଆମେ ଦରମା ଦେଇ ପୋଷୁଚୁ କାହିଁକି? ଆମର ସୁବିଧା ଅସୁବିଧା ବୁଝିବ କଣ ନା ଫେରାଦି ହେବାକୁ ଆସିଲାବେଳକୁ ଚାଲିଚି ଥଟ୍ଟା ତାମସା।'' ସ୍ତ୍ରୀ ଲୋକଟି ରାଗରେ ଫାଟି ପଡୁଥିଲା ଯେପରି। ହୁଏତ ମୁଁ ନ ଥିଲେ ସେଦିନ ସେ ସ୍ତ୍ରୀ ଲୋକଟି ଉପରେ ''ପୋଲିସ ପାଠ'' ଦି'ପଦ ହୋଇଥାନ୍ତା। ଇନ୍ସପେକ୍ଟର ବାବୁ ''ହଁ, ହଁ ବୁଝିବା ତୋ କଥା ବୁଝିବା'' କହି ତାକୁ ନୀରବ ହେବାକୁ କହୁଥାନ୍ତି। ସ୍ତ୍ରୀ ଲୋକଟି ତାଙ୍କୁ ଛାଡ଼ି ମୋରି ଆଡ଼କୁ ଧାଇଁ ଆସି ପୁଣି ପାଟି କରି କହିଲା- ''ବାବୁ, ଆପଣ କହିଲେ ମୁଁ କାଇଁକି ପାଞ୍ଚ ଥର ଦଉଡ଼ିବି? କାଲି ସକାଳୁ ଆସି କହିଲି ଲେଖ ନାଲିସ ଲେଖ। ହଁ ହଁ ମାରିଲେ, ଇନକ୍ୱାରୀ ଯିବୁ କହିଲେ। ଦିନସାରା କାମ ମାରା କରି ରହିଲି, କାହାରି ଦେଖା ନାଇଁ। ସନ୍ଧ୍ୟାବେଳକୁ ଜଣେ କିଏ ଆସିଲେ ତ ତାଙ୍କ ନିଜର ଗୋଡ଼ ଏପଟ ସେପଟ ପଡୁଥିଲା। ଘରକୁ ଫେରିଲାବେଳକୁ ସେ ଗଞ୍ଜୋଡ଼କୁ ସୁବିଧା ମିଳିଗଲା। ''ପୋଲିସ ଘଇତା କଲୁଣି ବୋଲି କହି ପୁଣି ମାରି ଆସିଲା। ମୁଁ ବି କଣ ଛାଡ଼ିଚି, ଦି ପାହାର ଦେଇଚି ଯେ ତା ନିଶା ଛାଡ଼ି ଯାଇଥିବ। ଶଳା, ମୋତେ ମାରିବୁ ମାର୍, ମୋ ପିଲାଙ୍କ ଦେହରେ ହାତ ଦେବୁ? କହିଲେ ଆଜ୍ଞା ସକାଳୁ ବସିଚି ଯେ ବାବୁମାନଙ୍କର ଥଟ୍ଟା ଅକଲ ଚାଲିଚି।''

ଆଉ କଣ ସବୁ ସେ ପାଟି କରିଥାଆନ୍ତା। ତା' ସାନପିଲାଟା ବାରଣ୍ଡାରୁ ବଡ଼ ପାଟିରେ କାନ୍ଦି ଉଠିଲାରୁ ଧାଇଁ ଯାଇ ତାକୁ କୋଳକୁ ନେଉ ନେଉ, ଆର ପିଲାଟିକୁ ଧରି ପାହାଚ ତଳକୁ ପାଦ ପକାଇବା ଆରମ୍ଭ କଲା। ଦି'ପାଦ ଆସି ଫେରିପଡ଼ି ଇନ୍ସପେକ୍ଟର

ସାମ୍ନା ସାମ୍ନି ତାଙ୍କ ଆଡ଼କୁ ବୁଲି ପଡ଼ି କହିଲା- ''ହଁ କହି ଦେଉଚି, ନାଲିସ ଲେଖ ବା ନ ଲେଖ, ତମର ସେ ସାମଲ ନା ଫାମଲକୁ କହି ଦେଇଥାଅ ଆଜି ଠେଙ୍ଗା ନେଉ କି ବନ୍ଧୁକ ନେଉ, ଯାହା କରିବା କଥା କରୁ। ଆଜି ଯଦି ସେ ଗଞ୍ଜୋଡ଼ ମୋ ପିଲାଙ୍କୁ ପିଟିଚି, ଏଇ ମୋ ପିନ୍ଧା ଶାଢ଼ି ଖୋଲି ବାନ୍ଧି ଘୋଷାରି ଆଣିବି ବିଚ୍‌ରାସ୍ତା ଉପରେ ଆଉ ଥାନା ସାମ୍ନାରେ ତା ନିଶା ଛଡ଼େଇବି। ଭାବିଚି ମୁଁ ମାଇକିନାଟା ବୋଲି ମୋ ଦେଇ କିଛି ହେବ ନାଇଁ। ମୁଁ ଖୁନ୍ ଖରାପିରେ ପଶିବାକୁ ଖୋଜୁ ନାଇଁ ବୋଲି ତମ ପାଖକୁ ଧାଇଁଚି। ତମ କରାମତିକି ଆଜି ଦିନଟା ଜଗିଲି। ପିନ୍ଧ, ସବୁ ପୋଲିସବାଲା ଶାଢ଼ି ପିନ୍ଧ। କହୁଚନ୍ତି କଣ ନା ସେ ଗଞ୍ଜୋଡ଼ ଟୋକା କୁଆଡ଼େ ପଲଟିକ୍ସ କରୁଚି। ଶଳା ତମେ ସବୁ କଣ କମ୍ କି?'' କହୁ କହୁ ସେ ବୁଲିପଡ଼ି ଚାଲିବା ଆରମ୍ଭ କରିଥିଲା। ସାନ ଝିଅଟା ତା ଲୁଗା କାନି ଧରି ପଛେ ପଛେ ଧାଇଁଥିଲା।

ମୋ ପାଖଦେଇ ଗଲାବେଳକୁ, ମୁଁ ଗାଡ଼ିର ଗୋଟେ କବାଟ ଖୋଲି ଅବାକ୍ ହୋଇ ତା'ଆଡ଼କୁ ଅନାଇଥିଲି। ମୋ'ଆଡ଼କୁ ଏମିତିଭାବରେ ଚାହିଁ, ମୁହଁ ବୁଲାଇ ନେଲା; ସତେ ଯେପରି ସେଇ ଗାଳିଟାରୁ କିଛି ଅଂଶ ମୋର ମଧ ପ୍ରାପ୍ୟ।



# ପୃଥକ୍ ପରିଚୟ

ସମ୍ବଲପୁର ପି.ଡବ୍ଲ୍ୟୁ.ଡି. ବଙ୍ଗଳାର ବାରନ୍ଦାରେ ଆମେ ଚା ପିଇ ବସି ଗପସପ କରୁଥିଲୁ। ଗିଜର୍ ଲାଗିଥିଲା କେବେ ରୁମ୍‌ରେ; କିନ୍ତୁ କାମ କରୁ ନାହିଁ। ଗରମ ପାଣି ବାଲ୍‌ଟିଏ ପାଇଁ ବିଚରା ଚୌକିଦାରକୁ ଚୁଲି ଲଗାଇବାକୁ ପଡ଼ିବ। ଡେରି ନିଶ୍ଚେ ହେବ। ଅପେକ୍ଷା କରିବା ଅବସ୍ଥାରେ ଥର୍ମୋଫ୍ଲାସ୍କ ପଠାଇ ଦୁଇ ଥର ଚା ମଗାଇ ପିଇ ବସି ଗପ କରୁଥିଲୁ।

ଭଦ୍ରଲୋକ 'ନମସ୍କାର ସାର୍' କହି ଆଗେଇ ଆସିଲେ। ମୁଁ ଠିକ୍ ଚିହ୍ନି ପାରୁ ନ ଥିଲି। ଭଦ୍ରଲୋକ ପାଖକୁ ଆସି ମଙ୍କିକ୍ୟାପ୍‌ଟା ଖୋଲି ହସି ହସି ଠିଆ ହେଲେ। ଠିକ୍ ଚିହ୍ନି ନ ପାରିଲେ ବି ଚିହ୍ନା ଚିହ୍ନା ମୁହଁ ଲାଗୁଥାଏ। ମୁଁ ଟିକିଏ ଅପ୍ରସ୍ତୁତ ହୋଇ କ'ଣ କହିବି ଭାବୁ ଭାବୁ ସେ କହିଲେ, ''ସାର୍ ଆପଣ ଇଆଡ଼େ କୁଆଡ଼େ?'' ମୋ ଉତ୍ତରକୁ ଅପେକ୍ଷା ନ ରଖି କହିଲେ, ''ମୁଁ ଏଇଠି ପି.ଏଚ୍. ଡିଭିଜନରେ ଆକାଉଣ୍ଟାଣ୍ଟ ଅଛି।'' ସେ ବୋଧହୁଏ ଅନୁମାନ କରି ନେଇଥିଲେ ମୁଁ ଠିକ୍ ମନେ ପକାଇ ପାରୁ ନାହିଁ। ଏଣୁ ଆହୁରି ଯୋଡ଼ିଦେଲେ, ''ଆପଣ ବାଲେଶ୍ୱରରେ ଥିବାବେଳେ ମୁଁ ଇରିଗେସନ୍ ଡିଭିଜନ୍‌ରେ ଜଏନ୍ କରିବାକୁ ଆସିଥିଲି।''

ଏତକ କହୁ କହୁ ମୋର ମନେ ପଡ଼ିଗଲା ଭଦ୍ରଲୋକଙ୍କ କଥା। ବାଲେଶ୍ୱରରେ ବେଶ ହୁଲ୍‌ସ୍ଥୁଲ ହୋଇ ଯାଇଥିଲା ସେତେବେଳେ। ବାଲେଶ୍ୱର ଅରଡ଼ ବଜାରରେ ଘର। ଚାକିରି କଲାଦିନୁ ଡୁଡୁମା, ମାଛକୁଣ୍ଡ, ସୁନାବେଡ଼ା ଏମିତି ରହି ରହି ବହୁ ଧରାଧରି କରି, ଏ.ଜି. ଅଫିସରେ ସନ୍ତୁଷ୍ଟ କରି ପୋଷ୍ଟିଂ ପାଇଥିଲେ ବାଲେଶ୍ୱର। ତାଙ୍କ ଆସିବା ବେଳକୁ ବାଲେଶ୍ୱର ଇରିଗେସନ୍ ଡିଭିଜନରେ ଅବସ୍ଥା ଗଣ୍ଡଗୋଳ ଧରିଥିଲା।

ଏକ୍ସିକ୍ୟୁଟିଭ୍ ଇଞ୍ଜିନିଅର ରହମନ୍ ଅଲ୍ଲୀ ଖାଁଙ୍କ ବିରୋଧରେ କେତେକ କଣ୍ଟ୍ରାକ୍ଟର କ୍ଷୁବ୍ଧ। କ'ଣନା ଓଭର୍ସିଅର୍ ଅମିନ୍ ମିଆଁସହ ମିଶି ସେ ଖାଲି ମିଆଁ କଣ୍ଟ୍ରାକ୍ଟରଙ୍କୁ କାମ ଦେଉଛନ୍ତି। ସତରେ ଦେଖିବାକୁ ଗଲେ ମିଆଁ କଣ୍ଟ୍ରାକ୍ଟର କେହି ନାହାନ୍ତି କହିଲେ ଚଳେ। ଗୋଟେ ଖାନ୍ ଚୌଧୁରୀ ଅଛି ଯେ, ତା ଦୁଇ ତିନି ପୁରୁଷ ଏଇ ଡିଭିଜନ୍‌ର କଣ୍ଟ୍ରାକ୍ଟର-ସେ ପୁଣି ଖାଲି କେନାଲରେ ମାଟି ପକା କଣ୍ଟ୍ରାକ୍ଟର। ଆଉ କଟକ ଆଡୁ ଆସିଚନ୍ତି ଆଲିମ୍ ଏଣ୍ଡ କୋ। ଆରେ ବାବା ସେମାନେ ସିଆଡୁ ଟେଣ୍ଡର ନେଇ ଚିଫ୍-ଇଞ୍ଜିନିଅର ମନ୍ତ୍ରୀ ଲେଭଲରୁ କାମ ପାଇ ଏଡ଼େ ବଡ଼ ଡ୍ୟାମ୍ କାମ କରୁଚନ୍ତି। ଆଉ ଏଠା କଣ୍ଟ୍ରାକ୍ଟରଙ୍କୁ ହଇରାଣ କରିବା କଥା ବା ଉଠିଲା କେଉଁଠୁ! କଥା କ'ଣ କି ବିଲ୍ ପେମେଣ୍ଟପାଇଁ ଫାଇନାନ୍ସ ଡିପାର୍ଟମେଣ୍ଟରୁ ଏଲ୍.ସି.ର ଅଭାବବେଳକୁ ଆଲିମ୍ କମ୍ପାନୀ ସିଆଡୁ ଧରା ଧରି କରି ତା'ପାଇଁ ସ୍ପେଶାଲ ଏଲ୍.ସି. ଆଣି ପେମେଣ୍ଟ ନେଇଯାଏ। ଆଉ ଯାହା ଟିକେ ବଳେ, ସବୁଦିନିଆ ଭୋଜିଭାତର ବ୍ୟବସ୍ଥା କରୁଥିବା ଖାଁ-ଚୌଧୁରୀଙ୍କୁ ସମସ୍ତ ଅଫିସ ସହାନୁଭୂତିରୁ କିଛି ମୋଟା ଅଂଶ ପେମେଣ୍ଟ ହୁଏ। ଏଇଥିରୁ ଧୀରେ ଧୀରେ ଗଣ୍ଡଗୋଳ ଆରମ୍ଭ ହୋଇ ପିଟିସନ୍ ଲେଖା ଓ ମନ୍ତ୍ରୀଙ୍କୁ ଆପତ୍ତି କରିବା ପର୍ଯ୍ୟନ୍ତ କଥା ଗଲା।

ଏତିକିବେଳେ ବିଚରା ଏଇ ଫିରୋଜ ଅହମଦ ଏକାଉଣ୍ଟାଣ୍ଟ୍ ହୋଇ ଆସିଲେ ସେଇ ଡିଭିଜନକୁ। ନିଆଁ ଯାହା ଟିକେ ଥମି ଆସୁଥିଲା ପୁଣି ଜଳିଲା ହୁତୁ ହୁତୁ ହୋଇ। ସେଥିକୁ ଘିଅ ଢାଳିଲେ ଖାଁ-ଚୌଧୁରୀ। କାରଣ ଏକା ସହରରେ ଘର, ବହୁ ବର୍ଷରୁ ପରିବାର ପରିବାର କଳି ଏଇ ଅହମଦ ଘର ସହ। ଫିରୋଜ ଆସିଲେ ଖାଁ-ଚୌଧୁରୀ ଭାତରେ ହାତ ମାରିବ; ଏଣୁ ସେ ବି ଭିତରେ ଭିତରେ ଉସ୍କେଇ ଦେଲା। ବାସ୍ କଲେକ୍ଟରଙ୍କ ଦ୍ୱାରେ ହରତାଳ୍, ଡିଭିଜନ୍ ଅଫିସ ଦ୍ୱାର ମୁହଁରେ ସବୁ ଶୋଇଲେ। କ'ଣ ନା, ଏ ପଠାଣମାନଙ୍କୁ ସବୁ ଏକାଠି ହେବାକୁ ଦିଆ ଯିବନି। ଏମାନେ ମିଶି ଆମ ସମସ୍ତଙ୍କୁ ହଇରାଣ କରିବେ, ଇତ୍ୟାଦି ଇତ୍ୟାଦି। ଫିରୋଜ ବିଚରା ଶେଷରେ ଜଏନ୍ କରିପାରିଲେ ନାହିଁ। କଲେକ୍ଟର, ସୁପରିଣ୍ଟେଣ୍ଡିଂ ଇଞ୍ଜିନିଅରଙ୍କ ସହ ମିଶି ଡି.ଏ.ଜି.ଙ୍କ ପାଖକୁ ଫୋନ୍‌ଫାନ୍ କଲେ, ଚିଠି ଲେଖିଲେ ଏବଂ ବାଧହୋଇ ଫିରୋଜ ଅହମଦ ଫେରିଲେ। ବାଲେଶ୍ୱରରେ ଜଏନ୍ ନ କରିପାରିବାରୁ ମନଦୁଃଖରେ ଫେରି ଯାଇଥିଲେ, ଆମ ସମସ୍ତଙ୍କୁ ଥରେ ଦେଖା କରିଦେଇ ଏବଂ ଏପରି ଅନ୍ୟାୟପ୍ରତି ଆମ ସମସ୍ତଙ୍କର ଅନୁକମ୍ପା ନ ରହିବା କଥା ସୂଚାଇ। ମୁଁ ସେତେବେଳେ ଆର.ଏଣ୍ଡ.ବି. ଡିଭିଜନରେ ଏକ୍ସିକ୍ୟୁଟିଭ୍ ଇଞ୍ଜିନିଅର୍ ଥାଏ। ମୋତେ କହିବାକୁ ଦୁଇ ତିନି ଥର ଆସିଥିଲେ ସେ, ମୋର ଡିଭିଜନରେ ରଖାଇ ଦେବାକୁ। ମୋର ଆପତ୍ତି ନ ଥିଲେ ମଧ୍ୟ ଆମ ଡିଭିଜନକୁ ଆସିଥିବା ଗଉଡ଼ ବାବୁ ମାତ୍ର ବର୍ଷେ ହେବ ଆସିଥିଲେ ଓ ତାଙ୍କ ଘର ମଧ୍ୟ ନୀଳଗିରି। ସେବି ଡି.ଏ.ଜି. ଅଫିସରେ

ଧରାଧରି କରି ଆସିଥିଲେ। ଏଣୁ ତାଙ୍କ ସହ ଯୁଦ୍ଧରେ ପାରିଲେ ନାହିଁ ଅହମଦ ବାବୁ। ବାଧହୋଇ ଫେରି ଯାଇଥିଲେ ମନଦୁଃଖରେ। ସବୁ କଥା ମନେ ପଡ଼ିଗଲା।

ଏତିକିବେଳେ ନରେନ୍ଦ୍ର ବାବୁ ଭିତରୁ ପାଟିକଲେ। "ଗରମ ପାଣି ଦିଆଗଲା ଗାଧୁଆ ଘରେ।" ମୁଁ ଉଠିଗଲି ଆଗେ। ଶୀଘ୍ର ଗାଧୋଇ ପଡ଼ିଲେ ଦଶଟା ସୁଦ୍ଧା ଯାଇ କନଫରେନ୍ସରେ ପହଞ୍ଚିବାକୁ ପଡ଼ିବ।

ମୁଁ କାମ ସାରି ଲୁଗାପଟା ପିନ୍ଧି ବାହାରକୁ ଆସିବାବେଳକୁ ନରେନ୍ଦ୍ର ବାବୁ ମଧ ଗାଧୁଆ ଘରକୁ ପଶିଗଲେଣି। ବାରନ୍ଦାରେ ଆମ ଚେୟାର ପାଖକୁ ଟାଣିଆଣି ଆଉ ଗୋଟେ ଚେୟାରରେ ବସିଥିବା ବୟସ୍କ ଭଦ୍ରଲୋକଟିଏ ଉଠିପଡ଼ି କଅଁଳିଆ ନମସ୍କାରଟିଏ ପକାଇଲେ। ମୁଁ ଜମା ଚିହ୍ନିପାରିଲି ନାହିଁ। ତେବେ ନମସ୍କାରରୁ ଜାଣିଦେଲି ନିଶ୍ଚେ ଆମ ପି.ଡବ୍ଲ୍ୟୁ.ଡି. ଲୋକ। ମୋ ଅନୁମାନ ଠିକ୍। ସେ ଏଠି ଏସ୍.ଇ. ଅଫିସରେ ଏଷ୍ଟିମେଟର୍ ଅଛନ୍ତି ଏବଂ ଏଇ ବଙ୍ଗଳାର ଶେଷ ରୁମ୍‌ରେ ରହନ୍ତି।

ଭଲ ହେଲା। ଏଠା ପି.ଡବ୍ଲ୍ୟୁ.ଡି.ର ଜଣେ ବାବୁଙ୍କ ସହ ଦେଖା ହୋଇଗଲା। ଆମେ ବେସରକାରୀଭାବେ, ମାନେ ନିଜ କାମରେ ଆସିଥିଲୁ; ସମ୍ବଲପୁର ସର୍ବଧର୍ମ ସମନ୍ୱୟ ସମିତିରେ ଯୋଗ ଦେବାକୁ। ଏଣୁ ଏଠାକାର କୌଣସି ଅଫିସରଙ୍କୁ ଖବର ମଧ ଦେଇ ନ ଥିଲୁ। ବଙ୍ଗଳା ରିଜରଭେସନ୍ ମଧ କର୍ମକର୍ତ୍ତାଙ୍କ ତରଫରୁ ହୋଇଥିଲା- ଖିଆପିଆ ସବୁ ସେମାନଙ୍କ ତରଫରୁ। ଏଣୁ କାହାରିକୁ ଆମେ ଲୋଡ଼ି ନ ଥିଲୁ। ନରେନ୍ଦ୍ର ବାବୁ ଭଦ୍ରଖରେ ଥିବାବେଳେ ହିନ୍ଦୁ ମୁସଲମାନ ଗଣ୍ଡଗୋଳ ଖୁବ୍ ଜୋରରେ ହୋଇଥିଲା। ସବ୍‌କଲେକ୍ଟର ହିସାବରେ ଅତ୍ୟନ୍ତ ବୁଦ୍ଧିମତ୍ତା ଓ ଦାୟିତ୍ୱର ସହ ସେ ଶାନ୍ତି ଫେରାଇ ଆଣି ପାରିଥିଲେ। ସେଥିପାଇଁ ତାଙ୍କୁ ଜାତୀୟ ସ୍ତରରେ ସମ୍ମାନିତ କରାଯାଇଥିଲା। ଆଜିକାର ସଭାରେ ସେ ମୁଖ୍ୟଅତିଥି। ମୁଁ ତାଙ୍କ ବନ୍ଧୁ ଭଦ୍ରକବାସୀ ହିସାବରେ। ଏପରି ସର୍ବଧର୍ମ ସମିତିସହ ବହୁ ସହରରେ ଚାକିରି ଜୀବନରେ ଜଡ଼ିତ ହୋଇଥିଲି।

ତାଙ୍କ ନାଁ ବିଶ୍ୱମୋହନ କର। ରିଟାୟାର କରିବାକୁ ଆଉ ମାତ୍ର ଦୁଇ ବର୍ଷ। ଗାଁରେ (ପୁରୀ ପାଖରେ) ସ୍ତ୍ରୀ; ପିଲାମାନେ ପାରି ଉଠିଲେଣି। କେବଳ ସାନ ଝିଅ କାମ ବାକି ଅଛି; ଏ ବର୍ଷ ବାହାଘର ଠିକ୍ ହୋଇଯାଇଚି। ବେଶ୍ ଗପୁଡ଼ି ଲୋକ। କଥା କଥାକେ ଜଗନ୍ନାଥଙ୍କ ନାଁ ନେଉଥାଆନ୍ତି, ତା' ସାଙ୍ଗକୁ ପଦେ ପଦେ ସଂସ୍କୃତ ଶ୍ଳୋକ ଉଦ୍ଧାର କରି ଧର୍ମ କିପରି ସମାଜରୁ ଧୀରେ ଧୀରେ ତଡ଼ା ଖାଇଚି କହି କ୍ଷୋଭ ପ୍ରକାଶ କରୁଥାଆନ୍ତି।

ଏତିକିବେଳେ ଅହମଦ ବାବୁ ପଛପଟ ବାରଣ୍ଡାରୁ ବାହାରି ଆସି କହିଲେ, "କର ଆପଣେ, ଘର ଖୋଲା ଅଛି ମୁଁ ଅଫିସ ଚାଲିଲି।" ମୋତେ ନମସ୍କାରଟିଏ ମାରି ସ୍କୁଟର ଧରି ବାହାରିଗଲେ। ତାଙ୍କ ଯିବା ରାସ୍ତାକୁ ଚାହିଁ ସେ ପଚାରିଲେ, "ସାର୍ ଆପଣ ଯାଙ୍କୁ କିପରି ଚିହ୍ନିଲେ।" ଖାଲି ବାଲେଶ୍ୱରରେ ଏକା ସାଙ୍ଗରେ ଥିଲୁ, କହି ଚୁପ୍ ରହିଲି।

କର ବାବୁ, ତାଙ୍କ ସହ ପରିଚୟ ଏଇ ଦୁଇ ମାସର ବୋଲି କହି, ଏମିତି ତାଙ୍କୁ ପ୍ରଶଂସା କଲେ ମୁଁ ଆଶ୍ଚର୍ଯ୍ୟ ହୋଇ ଚାହିଁ ରହିଲି। ସେ କହିଲେ, ଦୁଇ ଜଣ ପରିବାର ନ ଆଣି ସେଇ ଶେଷ ରୁମ୍‌ରେ ସାଙ୍ଗ ହୋଇ ଅଛନ୍ତି। କର ବାବୁଙ୍କ ସକାଳ ପୂଜା ପାଠପାଇଁ ସେ ଅଧଘଣ୍ଟାଏରୁ ଊର୍ଦ୍ଧ୍ୱ ସମୟ ଆସି ବାରଣ୍ଡାରେ ବସନ୍ତି, ମନ୍ତ୍ରପାଠ ଶେଷହେଲେ ଘରକୁ ପଶନ୍ତି। ଥରେ ସ୍କୁଟର ଷ୍ଟାର୍ଟ କରୁ କରୁ କର ବାବୁଙ୍କ ଗୋଡ଼ ମୋଡ଼ି ହୋଇଥିବାବେଳେ ପୂଜାପାଇଁ ଫୁଲ ତୁଳସୀ ମଧ୍ୟ ସେ ଆଣି ଦେଉଥିଲେ। ତାଙ୍କୁ ବାଧହୋଇ କର ବାବୁ ପୂଜାରେ ଲଗାଇ ଦେଇଚନ୍ତି ସେଇ ଜଗନ୍ନାଥଙ୍କୁ ଭକ୍ତ ସାଲବେଗର ନଜିର୍ ଦେଇ। ଅହମଦ ମଧ୍ୟ ଦିନରେ ତିନି ଥର ନମାଜ କଲାବେଳକୁ ଦରକାର ପଡ଼ିଲେ କର ମହାଶୟ ଆସନ ସଜାଇ ଦିଅନ୍ତି। ସେଇ ଘରର ପଛ ଆଡ଼କୁ ଅଫିସ ପିଅନ ରୋଷାଇ କରିଦିଏ। ଦି'ଜଣ ବଡ଼ାବଢ଼ି କରି ଖାଇ ନିଅନ୍ତି।

ମୁଁ କର ବାବୁଙ୍କ କଥା ଶୁଣି ଆଶ୍ଚର୍ଯ୍ୟ ଆଖିରେ ଚାହିଁ ରହିଥିଲି। ତାଙ୍କର ଦୁଇ ଆଖିରେ ଅହମ୍ମଦ ପ୍ରତି ଯୋଉ ପ୍ରଶଂସା, ସେଥିରେ ଧର୍ମ ଓ ସଂପ୍ରଦାୟ ସବୁ ଫିକା ପଡ଼ିଯାଉଥିଲା।



# ସ୍ୱର୍ଗ

ବସି ଚା' ଖାଉ ଖାଉ ବିନୟଭୂଷଣ ବୋହୂଙ୍କୁ ଥଟ୍ଟା କରି କହୁଥିଲେ। ''ମା ତମର ପୂରା ପାଗଳି ହେଇଗଲେଣି। ନଜର ରଖ, ନ ହେଲେ କେଉଁ ବାବାଜି ସହ ମାତାଜୀ ହୋଇ ପଳାଇଯିବେ।'' ବୋହୂ ହସି ଦେଇ ନୀରବ ରହନ୍ତି। ବାପାଙ୍କ ଅନ୍ତେ ମା'ଙ୍କୁ ଆଣି ବହୁ ଦିନୁ ପାଖରେ ରଖିଚନ୍ତି ସେ। ଗୋଟିଏ ବୋଲି ଭାଇ ଭାଉଜ, ଦୁହେଁ ଚାକିରିଆ। ସେଠି ମାସେ ଖଣ୍ଡେ ରହିଲେ ମା ବ୍ୟସ୍ତ ହୋଇ ପଡ଼ନ୍ତି, ଏଣୁ ବେଶି ସମୟଟା ଏଇଠି। ଶଶୁରଙ୍କ ସହ କଥାରେ କଥା ମିଶାଇ ବେଶି ବ୍ୟସ୍ତତା ବେଳେ, ବୋହୂ ମଧ୍ୟ ଯୋଡ଼ି ଦିଅନ୍ତି, ''ଯାଉନା, କେଉଁ ମଠକୁ ଯିବ ଯଦି ଯାଉ। ଦିନ ରାତି ସବୁ କାମ ଛାଡ଼ି ଖାଲି ଠାକୁର ଠାକୁର ହେଲା। ଯଦି ଚାହିଁବ ମୁଁ ନେଇ କେଉଁ ମଠରେ ରଖିଦେଇ ଆସିବି।'' ଏ କଥାଟା ବ୍ୟସ୍ତହୋଇ କହନ୍ତି, କାରଣ ଦିନେ ଦିନେ ଦିନ ଦୁଇଟା ପର୍ଯ୍ୟନ୍ତ ମାଙ୍କ ଠାକୁର କାମ ସରେ ନାହିଁ।

ବିନୟଭୂଷଣ ହସରେ ହସ ମିଳାଇ କଅଣ କହିବାକୁ ଯାଇ ହଠାତ୍ ଚୁପ୍ ହୋଇଯା'ନ୍ତି। ଅନ୍ତରରେ କେଉଁଠି ଗୋଟେ ଖୁଞ୍ଚା ଲାଗିଲାପରି ଲାଗେ। ଝିଅ କହୁଚି ତା ନିଜ ମା'କୁ ନେଇ ମଠରେ ଛାଡ଼ିବ। ବିଚାରୀ ସ୍ୱାମୀ ଅନ୍ତେ ପୁଅ ଝିଅଙ୍କ ସହ ସମୟ କଟାଇ ଦିଏ ଠାକୁରଙ୍କୁ ଆଶ୍ରା କରି। ଦୋଷ ଭିତରେ ଏଇଆ, ପୂଜାପୂଜି ଟିକିଏ ବେଶି ହୋଇଯାଉଚି। ଘଣ୍ଟା ଘଣ୍ଟା ଧରି ଦୁଆର ବନ୍ଦ କରି ବସିଥିଲାବେଳେ ନିଜ କାମ ଏପରିକି ଦୈନନ୍ଦିନ କାମ ମଧ୍ୟ ଭୁଲି ଯାଆନ୍ତି। ଏଇଥିପାଇଁ ସମୁଦୀ ବଞ୍ଚିଥିବାବେଳେ ଦୁଇ ସମୁଦୀ ମିଶି ସମୁଦିଆଣୀକୁ ଥଟ୍ଟା କରୁଥିଲେ। ହେଲେ ଝିଅ ମୁହଁରୁ ମଠରେ ନେଇ ଛାଡ଼ି ଆସିବା

କଥା ଶୁଣି ସେ ଭାବିଲେ, ସତରେ କଅଣ ସେଇଥିରେ ତୁମେ ସବୁ ଶାନ୍ତି ପାଇବ ନା ସେ ବି ଶାନ୍ତିରେ ରହି ପାରିବେ ?''

ଶାନ୍ତି ? କାଇଁ, ସେଇ ଯେ ମଶାଣି ଭୂଇଁରେ ଶୁଆଇ ଦେଇ ଆସିଲେ କିରଣବାଳାଙ୍କୁ, ତା'ପରଠାରୁ ଗୋଟେ ଦିନ, ଗୋଟେ ମୁହୂର୍ତ୍ତ ସେ କଅଣ ଶାନ୍ତିରେ କାଟି ପାରିଚନ୍ତି ? ପୁଅ ବୋହୂ ସମସ୍ତଙ୍କ ସ୍ନେହ ସେବାସହ ଚାକର ବାକର ଗାଡ଼ି ଇତ୍ୟାଦି ଇତ୍ୟାଦି ସବୁ କିଛି ତାଙ୍କପାଇଁ ଖଞ୍ଜି ଦିଆଯାଇଚି । ତଥାପି ଯେମିତି କଅଣଟା ଅଭାବ ଲାଗି ରହିଚି । ସବୁଦିନେ ସେ ବାସ୍ତବବାଦୀ । ସଂସାରଟା ଗୋଟେ ଘୋଡ଼ା, ସବାର ହୋଇପାରିଲେ ତମେ ଗଡ଼ ଜିତିଲ । ''ସଂସାରେ ଥିବ ଯେତେ ଦିନ, ଆନନ୍ଦ କରୁଥିବ ମନ'' ଥିଲା ତାଙ୍କ ଜୀବନର ଆଦର୍ଶ । ସବୁ ସତ୍ତ୍ୱେ ତାଙ୍କ ମନକୁ ଯେପରି ଧୀରେ ଧୀରେ ଗୋଟେ କୁହୁଡ଼ି ମାଡ଼ି ଆସିଲାପରି ଲାଗୁଚି । କୌଣସିଥିରେ ମନ ଲାଗୁନି । ବୋଧହୁଏ ମଣିଷ ଶେଷବେଳକୁ ଏତିକି ସବୁ ହଜେଇ ହଜେଇ ଅନ୍ଧାରରେ ଶେଷ ହୋଇଯାଏ । ଆଖି ତାଙ୍କର ପାଣି ପାଣି ହୋଇ ଆସେ ।

ଉଠି ଯାଆନ୍ତି ଘର ଭିତରକୁ ବିନୟଭୂଷଣ ଚିତ୍କାର କରି କରି ''କିରେ ପାପୁ, ମାନୀ ନିଦ ଭାଙ୍ଗିଲା କି ନାଇଁ ? ଆଠଟା ବାଜିଲାଣି । ଅଳସୁଆ ସବୁ ଉଠ । ପିଲାଙ୍କ ଶୋଇବା ଘରକୁ ପଶି ଯାଆନ୍ତି । ଭାଇ ଭଉଣୀ ଗୋଡ଼ ଉପରେ ଗୋଡ଼ ପକାଇ ପରସ୍ପର ଲଦାଲଦି ହୋଇ ଶୋଇ ଯାଇଚନ୍ତି । ଆଖି ଆଗରେ ନାଚିଉଠେ ଅତୀତର ପୃଷ୍ଠା- ସେମିତି ଦୃଶ୍ୟ ସବୁ । ଭାଇ ଭଉଣୀ ହୋଇ ସେମାନେ ସାତ । ଶୋଇଲା ବେଳକୁ ତିନି ଚାରିଟା ଯୋଡ଼ା ହୋଇ ସମସ୍ତେ ଧାଡ଼ି ହୋଇ ଶୋଇ ଯାଉଥିଲେ । ସାନ ଭାଇ ମାତ୍ର ଗୋଟାଏ ବର୍ଷ ସାନ ହେଲେ ବି ଯେମିତି ଛୁଆଟେ । ଯେମିତି ହେଲେ ପାଖରେ ଶୋଇବ ଆଉ ଦେହକୁ ଦେହ ଲଗାଇ ଗୋଡ଼ ହାତ ପକାଇ । ସିଏ ଗୋଟେ ପାଖରେ ତ ସାନ ଭଉଣୀ କୁନ୍ତଳା ଆର ପାଖରେ । ଅନ୍ଧାର ହେଲେ ତାକୁ ଡର ଭାରି । ବର୍ଷା ଝଡ଼ କି କେଉଁଠି ମୂଷା ଚାଲିଯିବା ଶବ୍ଦ ହେଲେ ସେ ଭାଇକୁ କୁଣ୍ଢାଇ ନ ଶୋଇଲେ ନିଦ ହେବନି । ବିନୟଭୂଷଣ ଆଜି ଏଇ ଭାଇ ଭଉଣୀ ଦୁଇ ଜଣଙ୍କ ଏପରି ଶୋଇବାର ଦେଖି ସେଇ ଅତୀତର ସ୍ପର୍ଶର ଅନୁଭୂତିକୁ ଗଭୀରଭାବେ ଅନୁଭବ କରୁଥିଲେ ।

ସତରେ ଆଜି ତାଙ୍କର ଅଭାବ କଅଣ ? ଏଇ ପିଲା ଦୁଇଟିକୁ ଦେଖୁ ଦେଖୁ ସେଇ ଅତୀତର ସ୍ପର୍ଶରେ ସ୍ମୃତିରୁ ସେ ଅନୁଭବ କଲେ ଅଭାବଟା- ଏଇ ସ୍ପର୍ଶ । ସ୍ପର୍ଶର ସ୍ମୃତି ଆଣିଦେଲା ତାଙ୍କୁ ତାଙ୍କ ଜୀବନରେ ଏଇ ସ୍ପର୍ଶର ଅଭାବ । କାଇଁ ଏଇ ସ୍ପର୍ଶ ? ମଣିଷର ସ୍ପର୍ଶ ? ଚିନ୍ତା କରୁ କରୁ ମନରେ ଆସି ଜମିଗଲା ସେଇ ରଙ୍ଗିନ ଉଷ୍ଣତା । କିରଣବାଳାଙ୍କୁ ସେ ପ୍ରେମ କରି ବାହା ହୋଇଥିଲେ । କୈଶୋର ପାରି ହେବାବେଳକୁ ଯେଉଁ ମାନସିକ ଅନ୍ତରଙ୍ଗତା ଆଖି ଆଖିରେ ଆବଦ୍ଧ ଥିଲା ପାଠ ପଢ଼ାଇବା ବାହାନାରେ ଧୀରେ ଧୀରେ ସାନ୍ନିଧ ବଢ଼ିବା ସଙ୍ଗେ ସଙ୍ଗେ କେତୋଟି ମୁହୂର୍ତ୍ତର ସୁଯୋଗରେ ଦେହର ସ୍ପର୍ଶ ଆଣିଥିଲା

ରୋମାଞ୍ଚ। ସେଇ ଅନ୍ତରଙ୍ଗତା ଯେତେବେଳେ ସବୁ ବାଧାବିଘ୍ନ ଏଡ଼ାଇ ତାଙ୍କ ଦୁଇ ଜଣଙ୍କୁ ଏକ କରିଥିଲା, ସେଇ ପ୍ରଥମ ରାତ୍ରିର ସ୍ପର୍ଶର ସ୍ମୃତି ଆଜି ସୁଦ୍ଧା ତାଙ୍କ ମନକୁ କରିଦିଏ ଉଭାଳ। ସେ ନିଜ ଶୋଇବା ଘରକୁ ଫେରିଆସି ନରମ ବିଛଣାରେ ପେଟ ମାଡ଼ି ଶୋଇପଡ଼ିଲେ। ବିଛଣାରେ ସମଗ୍ର ଶରୀରରେ ଥଣ୍ଡା ସ୍ପର୍ଶ ତାଙ୍କୁ ଯେପରି ଆହୁରି ଗଭୀରଭାବରେ ସୂଚାଇ ଦେଉଥିଲା ତାଙ୍କ ଜୀବନରେ କିରଣବାଳାଙ୍କ ବିଦାୟ ପରେ ମଣିଷର ସ୍ପର୍ଶର ଅଭାବଟା।

ପୁଅ ବୋହୂ ସମସ୍ତେ ବାପାଙ୍କ ମନ ରକ୍ଷା କରି ତାଙ୍କୁ ସବୁ ମୁହୂର୍ତ୍ତରେ ସୁଖୀ କରିବାକୁ ବ୍ୟସ୍ତ। ଝିଅ ଜୋଇଁ ଯେଉଁମାନେ ପାଖରେ ଅଛନ୍ତି ବାରମ୍ବାର ଆସି ବୁଲିଯା'ନ୍ତି। ଖାଲି ତାଙ୍କୁ ସୁଖୀ କରିବାକୁ। ନାତି ନାତୁଣୀ ସବୁ ସ୍କୁଲ ବା ପଢ଼ା ସମୟ ଛାଡ଼ିଦେଲେ ତାଙ୍କରି ପାଖରେ ଗପ କରନ୍ତି ଟି.ଭି. ଦେଖନ୍ତି। ସବୁ ସତ୍ତ୍ୱେ ମନେହେଲା ''କାହିଁ କେହି କେତେବେଳେ ତାଙ୍କ ଛାତି ଉପରେ ଶୋଇ ପଡ଼ିନି ତ! ନାତି ନାତୁଣୀ ବି ଠିକ୍ ରୁଟିନ୍ ବନ୍ଧା, ଚାରିପଟେ ଘେରି ସିନା ବସିଚନ୍ତି କିନ୍ତୁ ସ୍ପର୍ଶ କାଇଁ? ମଣିଷର ସ୍ପର୍ଶ କାଇଁ?'' ସେ ସତେ ଯେପରି ବର୍ତ୍ତମାନ ଅନୁଭବ କରୁଛନ୍ତି ଏ କେତେଟା ବର୍ଷ ତାଙ୍କର ଅଭାବର କାରଣଟା।

ହଠାତ୍ ସମୁଦିଆଣୀଙ୍କ ଡାକରେ ବିନୟଭୂଷଣ ପ୍ରକୃତିସ୍ଥ ହୁଅନ୍ତି ଆଉ ମୁଣ୍ଡ ବୁଲାଇ ଚାହାନ୍ତି ତାଙ୍କ ମୁହଁକୁ। ହସି ହସି ସମୁଦିଆଣୀ ଠିଆ ହୋଇଚନ୍ତି। ସୌମ୍ୟ ଶାନ୍ତ ଚେହେରା। ସ୍ୱାମୀହରା ଏଇ ନାରୀଟି ଧଳା ଶାଢ଼ିଟିଏ ପିନ୍ଧି ବେଶ୍ ସବୁବେଳେ ହସ ହସ। ଅଶାନ୍ତିର ନାମ ଗନ୍ଧ ନାଇଁ ତାଙ୍କ କଥାବାର୍ତ୍ତା ଚଳଣିରେ। ସତେ ଯେପରି ସଦା ଶାନ୍ତିର ମୂର୍ତ୍ତି। ଏଇ ଶାନ୍ତିର ମୂର୍ତ୍ତିଟିକୁ ଅପଲକ ନୟନରେ ଚାହିଁ ରହିଲେ ସେ। ସମୁଦିଆଣୀ କହିଲେ ''ଆସ ସମୁଦୀ ବାରଣ୍ଡାକୁ, ଏମିତି ଅସମୟଟାରେ ବିଛଣାକୁ ଗଲ କାହିଁକି?''

ହଠାତ୍ ବିନୟଭୂଷଣ ଅନୁଭବ କରନ୍ତି ଏକ ନୂତନ ଚେତନା। ସେ ଏତେ ବର୍ଷ ଧରି ଖୋଜି ବୁଲୁଥିବା ସ୍ପର୍ଶ, କାଇଁ ସମୁଦିଆଣୀଙ୍କର ତ ଅଭାବ ନାଇଁ, ବୋଧକଲେ ସେ। ପୁଣି ଥରେ ତାଙ୍କଆଡ଼କୁ ସେ ଚାହିଁଲେ। ଦ୍ୱାର ବନ୍ଧ ଉପରେ ପରଦା ଟେକି ଛିଡ଼ା ହୋଇଥିଲେ ସମୁଦିଆଣୀ। ଗୋଟେ ଫ୍ରେମରେ ଫଟୋ ପରି। ଯେଉଁ ତୁଳସୀ ମାଳି ଚନ୍ଦନଟିକା ସବୁକୁ ସେ ସବୁଦିନେ ଥଟ୍ଟା କରି ଆସିଥିଲେ, ସେସବୁ ସତେ ଯେମିତି ସମୁଦିଆଣୀଙ୍କ ଦେହରେ ଲେପଟି ରହିଚି। ଧୀରେ ଧୀରେ ମଣିଷଟା ଯେପରି ଅପସରି ଗଲା ଆଉ କପାଳ, ବେକ ବାହୁରେ ବୋଳା ତୁଳସୀ ଦାଉ ଦାଉ ହୋଇ ଜଳି ଉଠୁଥିଲା।

ସେ ଅନୁଭବ କଲେ, ଠାକୁରଙ୍କ ପାଦତଳୁ ଚନ୍ଦନ ଟିକେରେ ସଂସାରଟା ଯାଙ୍କର ଅନ୍ତରଙ୍ଗମାନଙ୍କର ଶରୀରର ସ୍ପର୍ଶ ସେଇ ତୁଳସୀ ଆଉ ଚନ୍ଦନ ଭିତର ଦେଇ କେହି ତାଙ୍କ ଦେହକୁ ଜଡ଼ାଇ ଧରିଚି।

(ବନ୍ଧୁମାନଙ୍କ ଅନୁରୋଧରେ ଆଉ ପାଦେ ପର ଗଳ୍ପରେ)



# ମନର ରଙ୍ଗ

ସମୁଦିଆଣୀଙ୍କ ମୁହଁକୁ ଚାହିଁ ବିନୟଭୂଷଣ ଯେପରି ସ୍ଥାଣୁ ହୋଇ ରହିଗଲେ। ସେ ନିଜକୁ ଭୁଲି ସମ୍ପୂର୍ଣ୍ଣରୂପେ ଆତ୍ମଜ୍ଞାନ ହରାଇ ବସିଥିଲେ। ଆଖିରୁ ତାଙ୍କର ଲୁହ ବୋହିବା ଆରମ୍ଭ ହୋଇଯାଇଥିଲା। ସେ ଲୁହ ଏକ ଆତ୍ମଚେତନାର ଲୁହ। ସୁଦୀର୍ଘ ଜୀବନରେ ଏପରି ଏକ ଭାବାନ୍ତର ତାଙ୍କର ହୋଇ ନ ଥିଲା। ସ୍ତ୍ରୀ କିରଣବାଳାଙ୍କୁ ସେ ନିଜେ ବାଛି ବାହା ହୋଇଥିଲେ; ଠିକ୍ ପ୍ରେମବିବାହ ନ ହେଲେ ମଧ୍ୟ ପରସ୍ପର ଇଚ୍ଛା ବିବାହ। ଏବଂ ଜୀବନଟାକୁ ଦୁଇ ଜଣ ଏକାପ୍ରକାର ରଙ୍ଗରେ ଦେଖିଥିଲେ। 'ଋଣଂକୃତ୍ୱା ଘୃତଂ ପିବେତ୍', ବିନୟଭୂଷଣଙ୍କ ଜୀବନର ଏଇହେଲା ଆଦର୍ଶ। ତାଙ୍କ ସହ କିରଣବାଳା ମଧ୍ୟ ମିଶିଗଲେ। ସ୍ୱାମୀଙ୍କ ପ୍ରତି ପାଦ ସହ ପାଦ ମିଶାଇଲେ ସିନା, ହେଲେ ତାଙ୍କର ଆଗପଛ ସୁବିଧା ଅସୁବିଧା ଚିନ୍ତା ଥିଲା। ଏଣୁ ସେ ଜମିବାଡ଼ିର ତତ୍ତ୍ୱ ଠିକ୍ ନେଉଥିଲେ। ଧାନ ଚାଉଳ, ଡାଲି, ପନିପରିବା ସବୁ କରାଇ ନେଉଥିଲେ ସେଇ ଆଦିବାସୀ ରାଜ୍ୟରେ, ଆଦିବାସୀ କୁଲି ମୂଲିଆଙ୍କୁ ଲଗାଇ ଆଉ ତା' ସାଙ୍ଗକୁ ପୋଖରୀରେ ମାଛ ଚାଷ ଓ ନଡ଼ିଆ ଗଛ ଇତ୍ୟାଦିର ସେବାଯତ୍ନ ଇତ୍ୟାଦି ଠିକ୍ ମୁତାବକ କରି, ସୁରୁଖୁରୁରେ ଘର ଚଳାଇବା ବ୍ୟବସ୍ଥା କରିଥିଲେ। ଏଇଟା ଛାଡ଼ିଦେଲେ କିନ୍ତୁ ଅନ୍ୟ ସବୁ ବିଷୟରେ ମତିଗତି ସ୍ୱାମୀଙ୍କସହ ସମାନ। ମାନେ ଜୀବନଟାକୁ ଉପଭୋଗ କରିବା ଛଡ଼ା ଅନ୍ୟ ଯେପରି କିଛି ନାହିଁ। ପୂଜା ପାର୍ବଣ ସବୁ ସେଇ ଆଦିବାସୀଙ୍କ ପରି। ଖାସି ମାଂସ ଆଉ ନାଚ ଗୀତିର ଆସରରେ ଆରମ୍ଭ ଓ ଶେଷ। ମନ୍ଦିର ଯିବା ନାହିଁ କି ଏକାଦଶୀ ପୂର୍ଣ୍ଣମୀ ପୂଜା ପାଠ କିଛି ନାହିଁ। ଏମିତି ଅବସ୍ଥାରେ ଜୀବନଟା କଟିବାପରେ ହଠାତ୍ ପରିଣତ

ବୟସରେ ସ୍ତ୍ରୀ ଅଭାବରେ ବିନୟଭୂଷଣ ସତେ ଯେପରି ଦିଗହଜା ତରୀ ପରି ଭାସି ବୁଲୁଥିଲେ। ସବୁଥିରେ ଅଭାବର ଏକ ବୋଝ ଅନୁଭବ କରୁଥିଲେ ସେ। ପୁଅବୋହୂ ପାନରୁ ଚୂନ ଖସିବାକୁ ଦେଉ ନ ଥିଲେ। ପାଖରେ ଝିଅ ଜୋଇଁ ନାତି, ନାତୁଣୀ ସବୁବେଳେ ଯିବା ଆସିବା, କେବଳ ବିନୟଭୂଷଣଙ୍କୁ ଖୁସି କରିବାପାଇଁ। ତଥାପି ପ୍ରତ୍ୟେକ ମୁହୂର୍ତ୍ତରେ ସେ ଅନୁଭବ କରୁଥିଲେ ଗୋଟେ ସ୍ପର୍ଶ- ଅନ୍ତରଙ୍ଗ ସ୍ପର୍ଶର ଅଭାବ।

ଆଜି କିନ୍ତୁ ହଠାତ୍ ସମୁଦିଆଣୀଙ୍କୁ ଚାହିଁ ବିନୟଭୂଷଣ ଅନୁଭବ କଲେ, ସବୁ ଅଭାବବୋଧର କାରଣଟା। ଏଇ ନାରୀଟି ମଧ୍ୟ ସ୍ୱାମୀ ହରାଇଚି, ହେଲେ ତାର ଅନ୍ତରଟା ତ ପରିପୂର୍ଣ୍ଣ ବୋଧ ହୁଏ। କଣ ସବୁ ଦୀକ୍ଷା ନେଇ ଘଣ୍ଟା ଘଣ୍ଟା ଧରି ପୂଜାରେ ବସି ଯାଉଚି। ହେଲେ ଶାନ୍ତିରେ ଅଛି ତ। କଣ ସତରେ ଏଇ ବୟସରେ ଗୋଟେ ଆଶ୍ରୟ ନେବାକୁ ପଡ଼ିବ 'ଗୁରୁ'ର। ଗୁରୁ, ବାବାଜି ଇତ୍ୟାଦି ନାଁ ଶୁଣିଲେ ତାଙ୍କ ନାହି ଡିଏଁ। ସତରେ କଣ ଜୀବନର ଶେଷ ପାହାଚରେ ତାଙ୍କ ଚିନ୍ତାଧାରା ଭୁଲ୍ ବୋଲି ଗ୍ରହଣ କରି, 'ନାମ' ଜପିବାକୁ ପଡ଼ିବ! ଏଇ କଣ ଶାନ୍ତିର ଦ୍ୱାର!

ତାଙ୍କ ଆଖିରେ ଲୁହ ଦେଖି ସମୁଦିଆଣୀ କୁନ୍ତଳା ଦେବୀ ବ୍ୟସ୍ତ ହୋଇଉଠିଲେ। ଭାବିଲେ ଅବା ପୁଅ ବୋହୂ କେହି କିଛି ଅବହେଳା କରିଚନ୍ତି କି ପୁରୁଣା କଥା ମନେ ପଡ଼ି ବୁଢ଼ାଟା ଭାଙ୍ଗି ପଡ଼ିଚି। ସେ ଆଗେଇ ଆସି ଖଟ ଧାରରେ ବସି ପଡ଼ିଲେ। ଆଉ ତାଙ୍କ ଆଖିରୁ ଲୁହ ପୋଛି ଦେଉଁ ଦେଉଁ କହିଲେ- ''ଆସ ଆସ- ମନଦୁଃଖ କାହିଁକି କରୁଚ? ଏ ବୟସରେ ମନ କ'ଣ ଆଉ ସଂସାରର ସୁଖ ଦୁଃଖରେ ଅଛି। ଏବେ ମନକୁ ଆଉ ନିତିଦିନିଆ ସଂସାରର ସୁଖ ଦୁଃଖ କିଛି ଛୁଇଁ ପାରିବ ନାହିଁ।''

ତାଙ୍କ କଥାରେ ବିନୟଭୂଷଣ ଟିକିଏ ଲଜ୍ଜିତ ହୋଇ ଆଖି ପୋଛି ପକାଇଲେ। ଉଠି ବସିବାକୁ ଚେଷ୍ଟା କରି କୁନ୍ତଳା ଦେବୀଙ୍କ କାନ୍ଧକୁ ଧରି ବିଛଣାରୁ ଉଠି ଠିଆ ହେଲେ ସେ। ହଠାତ୍ ତାଙ୍କ ହାତଟା କୁନ୍ତଳା ଦେବୀଙ୍କ କାନ୍ଧରେ ଭାରି ଭାରି ଲାଗିଲା। କୁନ୍ତଳା ଦେବୀ ଚାଲିବା ବାହାନାରେ ଟିକିଏ ଆଗେଇ ଯାଇ ତାଙ୍କ ହାତଟାକୁ ଓହ୍ଲାଇ ଦେଲେ କାନ୍ଧରୁ। ସକାଳ ବେଳଟାରେ ଏମିତି କାହିଁକି ମନମାରି ଶୋଇଚ ବୋଲି ଡାକି ଦେଇଥିଲେ ସେ ବାହାରକୁ ଆସି ବସିବାପାଇଁ। ପଛେ ପଛେ ବିନୟଭୂଷଣ ବାରଣ୍ଡାକୁ ଆସି ତାଙ୍କ ନିତିଦିନିଆ ଚେୟାର୍‌ଟା ଉପରେ ବସିପଡ଼ିଲେ। ତାଙ୍କ ଆଗକୁ ବସିଥିଲେ କୁନ୍ତଳା ଦେବୀ। କାନ୍ଧ ଉପରେ ବିନୟଭୂଷଣଙ୍କ ହାତଟାର ଓଜନଟା ଏବେ ବି ପୂରା ଯାଇ ନାହିଁ ପରି ଅନୁଭବ କରୁଥିଲେ ସେ। ସାମ୍ନାସାମ୍ନି ବସିବାକୁ ଆଜି କେମିତି ଅଖାଡୁଆ ଲାଗିଲା। କୁନ୍ତଳା ଦେବୀ ଚେୟାର୍‌ଟାକୁ ଟିକିଏ କଡ଼ପଟକୁ ବୁଲାଇ ନେଲେ। ମନଖୁସିରେ ବିନୟଭୂଷଣଙ୍କୁ ଡାକି ଆଣିଥିଲେ ବାହାରକୁ, ଗପକରି ତାଙ୍କ ଭାରାକ୍ରାନ୍ତ ମନଟାକୁ ଉଲ୍ଲାସ

କରିଦେବାପାଇଁ, କିନ୍ତୁ ହଠାତ୍ କିପରି ତାଙ୍କୁ ମାଡ଼ି ମାଡ଼ି ପଡ଼ିଲା । ବିନୟଭୂଷଣଙ୍କ ମୁହଁକୁ ଚାହିଁବାକୁ ସାହସ ନ କରି ସେ ବସି ମାଳା ଜପିବାକୁ ଚେଷ୍ଟା କରୁଥିଲେ ।

ବିନୟଭୂଷଣ, ସେଇଠି ଚେୟାରଟାରେ ବସି କୁନ୍ତଳାଙ୍କ ମୁହଁର ଡାହାଣ ପାଖଟାକୁ ନିର୍ନିମେଷ ନୟନରେ ଚାହିଁଥିଲେ । ଗୋରା ଢକ ଢକ ବେକ ଉପରେ ପାଚିଲା ବାଳ । ବେଣ୍ ଘନ; ଆଉ ନାଲିଆ । କାନଟାରେ ଗୋଟେ ଛୋଟ ହୀରା ଲଗା ଫୁଲ । ଗାଲର ଗୋଟେ ଅଂଶ ସେ ଦେଖି ପାରୁଥିଲେ । ହଠାତ୍ ସେ ଅନୁଭବ କଲେ କୁନ୍ତଳା ଦେବୀଙ୍କ ଖାଲି କାନ ନୁହେଁ, ଯେଉଁ ଟିକିଏ ଗାଲ ଦେଖା ଯାଉଥିଲା ସେଇଟା ମଧ୍ୟ ନାଲି ହୋଇ ଯାଇଚି ।

ସେ ନିଜ ଚେୟାର୍‌ଟାକୁ ଟାଣି ନେଇ କୁନ୍ତଳା ଦେବୀଙ୍କ ଚେୟାର୍‌କୁ ଲଗାଇ ବସି ପଡ଼ିଲେ । କୁନ୍ତଳା ଦେବୀ ଅନ୍ତର ମଧ୍ୟରେ ଏକପ୍ରକାର ନୂଆ ଅନୁଭୂତି ଉପଭୋଗ କରୁଥିଲେ ଯେପରି । ଡରି ଡରି ମୁହଁ ଟେକିଲେ ଧୀରେ ଧୀରେ ଓ ବିନୟଭୂଷଣଙ୍କ ମୁହଁକୁ ଚାହିଁଲେ । ବିନୟଭୂଷଣ ତାଙ୍କ ମୁହଁକୁ ଚାହିଁଥିଲେ- ଓଠରେ ସାମାନ୍ୟ ହସ । କୁନ୍ତଳା ଦେବୀ ବୋଧହୁଏ ଦୁଇଟି ମୁହୂର୍ତ୍ତ କିଂକର୍ତ୍ତବ୍ୟବିମୂଢ଼ ହୋଇ ତାଙ୍କ ଆଖିକୁ ଚାହିଁ ରହିଥିଲେ । କିନ୍ତୁ ପରକ୍ଷଣରେ ତାଙ୍କ ଆଖିରେ ମଧ୍ୟ ଏକ ପ୍ରକାର ଆନନ୍ଦର ଭାବ ଜମିଗଲା । ସେ ମୁହଁ ବୁଲାଇ ନେଲେ ।

ହଠାତ୍ ବିନୟଭୂଷଣ ଅନୁଭବ କଲେ ମଣିଷର ସ୍ପର୍ଶ ଦେହ ହାତର ସ୍ପର୍ଶ ନୁହେଁ । ମଣିଷର ମନ ହିଁ ସବୁ; ଆଉ ମଣିଷର ମନକୁ ଛୁଇଁ ପାରିଲେ ଯେଉଁ ଭାବ ସୃଷ୍ଟି ହୁଏ ସେଇଟା ହିଁ ସ୍ପର୍ଶ ।

କୁନ୍ତଳା ଦେବୀଙ୍କ ଜପାମାଳିଟା ଆଙ୍ଗୁଳିରୁ ଖସି ପଡ଼ିଥିଲା । ସବୁଦିନେ ସେଇ ଠାକୁରଙ୍କ ପାଖରେ ଘଣ୍ଟା ଘଣ୍ଟା ଧରି ପ୍ରଣାମ କଲାବେଳକୁ ଗୋଟିଏ ଭିକ୍ଷା ଥିଲା ତାଙ୍କର ''ମୋତେ ପାରି କରିଦିଅ ଭଗବାନ- ଏଇ ମୁହୂର୍ତ୍ତରେ ।'' ଆଜି କିନ୍ତୁ ତାଙ୍କର ମନେହେଲା- ''ଏଇ ମୁହୂର୍ତ୍ତ ନ ହେଇ ପର ମୁହୂର୍ତ୍ତ ହେଲେ କିଛି ଆପତ୍ତି ନାହିଁ ।''



# ପିତୃତ୍ୱ

ବିଷ୍ଣୁ ବାବୁଙ୍କୁ ସହରରେ ଅଧିକାଂଶ ଚିହ୍ନିଥିବେ ନିଶ୍ଚେ। ଯେଉଁମାନେ ବିଶେଷତଃ ଭୁବନେଶ୍ୱରରେ ବହୁଦିନ ହେଲା ଅଛନ୍ତି ସେମାନେ ନିଶ୍ଚେ। କାରଣ ସେତେବେଳେ କ୍ୟାପିଟାଲ ହସ୍ପିଟାଲ କହିଲେ ମଳିମୁଣ୍ଡିଆ କିରାଣି ବାପୁଡ଼ା ଆଉ ମଧମ ଅବସ୍ଥାର ବ୍ୟବସାୟୀମାନଙ୍କ ପାଇଁ ଡାକ୍ତର କହିଲେ ବିଷ୍ଣୁ ବାବୁଙ୍କୁ ହିଁ ବୁଝାଯାଉଥିଲା। କ୍ୟାପିଟାଲରେ ସବୁ ପାଗିବାର ଡାକ୍ତର। ସେମାନେ ସବୁ ମନ୍ତ୍ରୀ, ଆଇ.ଏ.ଏସ୍., ବଡ଼ ବଡ଼ ଅଫିସରଙ୍କ ପିଛା ଦଉଡ଼ନ୍ତି- ତା'ପରେ ପଞ୍ଜାବୀ, ମାରୁଆଡ଼ି କି ପଇସାବାଲା କଣ୍ଟ୍ରାକ୍ଟରଙ୍କ ଗାଡ଼ିରେ ବୁଲନ୍ତି। ଡାକ୍ତରଖାନାରେ ଯେଉଁ କେତେ ଜଣ କମ୍ପାଉଣ୍ଡର ବାବୁ ଥିଲେ ତାଙ୍କ ଭିତରେ ବିଷ୍ଣୁ ବାବୁର ହାତ ଭଲ, କଥା ଭଲ ଆଉ କାମ ବି ଭଲ। ସକାଳୁ ଡାକ୍ତରଖାନା ଖୋଲିବା ପୂର୍ବରୁ କାହାର ଇଞ୍ଜେକ୍ସନ ଦେବା, କାହାର ରକ୍ତ ଆଣିବା ତ କାହା ବୁଢ଼ୀ ମା'ର ବ୍ଲଡ୍‌ପ୍ରେସର ଦେଖିବା ଇତ୍ୟାଦି କାମ ଶେଷକରି ଠିକ୍ ସମୟରେ ଡାକ୍ତରଖାନାରେ ପହଞ୍ଚିଯାଏ ବିଷ୍ଣୁ ବାବୁ। ସେତେବେଳେ କ୍ୟାପିଟାଲଟା କେଡ଼େ ବଡ଼ ଯେ। ଇଆଡ଼େ ୟୁନିଟ୍ ଏକ, ଦୁଇ, ତିନି, ଛ' ଆଉ ସିଆଡ଼େ ଗୌତମନଗର, ବୁଦ୍ଧେଶ୍ୱରୀ, ଚିନ୍ତାମଣିଶ୍ୱର, କଳ୍ପନା। ବିଷ୍ଣୁ ବାବୁର ଦଉଡ଼ ଓଭରବ୍ରିଜ ଆରପଟକୁ ନାହିଁ କହିଲେ ଚଳେ। କାରଣ ସେପଟଟା ପୁରୁଣା ଭୁବନେଶ୍ୱରର ପୁରୁଣା ଡାକ୍ତରପୁଞ୍ଜିଙ୍କ ମାଡ଼ି ବସିଥାନ୍ତି। ଏଣେ ଡାକ୍ତରଖାନାରେ ଷ୍ଟୋରରୁ ଔଷଧ ଦିଆଇବାଠୁ ଆରମ୍ଭ କରି ଏକ୍ସରେ କି ପ୍ଲାଷ୍ଟର କରାଇବା, କାହାକୁ ଇନ୍‌ଡୋରରେ ଏଡ଼ମିଟ୍ କରିବା ଏସବୁରେ ମଧ ସିଭିଲ ସର୍ଜନଙ୍କ ପାଖକୁ ଧାଁ ଧପଡ଼ କରି ସମସ୍ତଙ୍କପାଇଁ ଲାଗି ପଡ଼ିଥାଏ ବିଷ୍ଣୁ ବାବୁ। ଲୋକେ ତ କଥା କଥାକେ କହନ୍ତି ଭୁବନେଶ୍ୱରରୁ ଏମ୍.ଏଲ୍.ଏ.ପାଇଁ ଛିଡ଼ାହେଲେ

ବିଷ୍ଣୁ ବାବୁଙ୍କୁ ହରାଇବାକୁ କେହି ନାହିଁ। ଏଇଟା କିନ୍ତୁ ଖାଲି କହିବାର କଥା ନୁହେଁ, ନିପଟ ସତ କଥା।

ମୁଁ ତାଙ୍କୁ ଜାଣିବାକୁ ପାଇଲି ଠିକ୍ ଭୁବନେଶ୍ବରରେ ପୋଷ୍ଟିଂ ହେବାର ଦୁଇଟ ମାସ ଭିତରେ। ରକ୍ତ ପରୀକ୍ଷା ଦରକାର ପଡ଼ିଲା ମୋ ମା'ର। ସକାଳୁ ମା'କୁ ଧରି ଯିବାକୁ ପଡ଼ିବ ଡାକ୍ତରଖାନା। ସେତେବେଳେ ଆଜି ପରି ଗଳିକନ୍ଦିରେ ମଳ, ମୂତ୍ର, ରକ୍ତ ପରୀକ୍ଷା ବ୍ୟବସ୍ଥା ନ ଥିଲା। ଡାକ୍ତରଖାନାରୁ ରାଜଗୁରୁ ବାବୁଙ୍କୁ ଡାକିବ ନ ହେଲେ ବିଷ୍ଣୁ ବାବୁଙ୍କୁ। ବିଷ୍ଣୁ ବାବୁ ରକ୍ତନେଇ ସେଇ ରାଜଗୁରୁ ବାବୁ ହାତରେ କାମଟି କରାଇ ତା' ପାଉଣା ଗଣ୍ଡାକ ଠିକ୍ ଧରାଇଦେବ। ମୁଁ ପଡ଼ିଶାଘରେ ପଚାରି ଏ କଥାଟି ବୁଝି ନେଲି। ଆଗଦିନ ସନ୍ଧ୍ୟାବେଳେ ଡାକ୍ତରଖାନା ପରିସର ଭିତରେ ବିଷ୍ଣୁ ବାବୁଙ୍କୁ ପାଇବାରେ ବିଶେଷ ଅସୁବିଧା ହେଲାନି। ସେ ଆସି ଠିକ୍ ପହଞ୍ଚିଗଲେ ସକାଳୁ ସକାଳୁ। ବଗିଚାରେ ମୋ ତିନି ବର୍ଷର ପୁଅ ମୁନ୍ନୁ କୁକୁର ସହ ଖେଳୁଥିଲା। ଆମେ ବାହାରୁ ମୁନ୍ନୁ ସହ କିଏ କଥାବାର୍ତ୍ତା କରୁଛି ଶୁଣି ବାହାରକୁ ଆସିବାବେଳକୁ ମୁନ୍ନୁ ଆଉ ବିଷ୍ଣୁ ବାବୁଙ୍କ ବନ୍ଧୁତ୍ୱ କଥାବାର୍ତ୍ତାରୁ ଡେଇଁ, କାନ୍ଧ ଉପରେ ହାତରଖିବା ଯାଏ ପହଞ୍ଚିଲାଣି। ଆମେ ସତରେ ମୁଗ୍ଧ ହୋଇଗଲୁ ବିଷ୍ଣୁ ବାବୁର ଅପରିଚିତ ପିଲାଟି ପ୍ରତି ସ୍ନେହଭାବ ଦେଖି। ପରେ ଜାଣିଲୁ ସେ ଏମିତି ଭାରି ସ୍ନେହୀଲୋକ। ଗପୁଡ଼ି ମଧ। ମା' ସହ ଯୋଡ଼ି ହୋଇଗଲେ।

ମୋ ମା'ବି ଏମିତି ଜଣେ ମଣିଷ, ଥରେ ତା' ସହ ଯାହାର ଦେଖା ସେ ନିଶ୍ଚେ ଜୀବନସାରା ମନେ ରଖିବ। ପାଞ୍ଚମିନିଟ୍ କଥା ନ ହେଉଣୁ ବିଷ୍ଣୁ ବାବୁ ତାଙ୍କ ନିଜ ବଂଶ ଗୋତ୍ର ସମ୍ବନ୍ଧରେ ଯେତିକି ଜାଣିଥିଲେ ମୋ ମା'ଠାରୁ ତାର ବଂଶଗୋତ୍ର ବିଷୟରେ ବେଶୀ ଜାଣିଗଲେ। ''ତମର ଜଣେ ମାଉସୀ, ଦାନ୍ତୁଣ ପାଖ ଏଗ୍ରାରେ ବାହା ହୋଇ ନ ଥିଲେ, ଚଉଧୁରୀ ଘରେ? ତାଙ୍କ ପୁଅର ଶଳା କେନ୍ଦ୍ରାପଡ଼ା ବୈଦ୍ୟନାଥ ମହାପାତ୍ରଘରେ ଘରଜୋଇଁଆ ହୋଇ ରହିଥିଲା- କିହୋ କ'ଣ କିଛି ନ ଜାଣିଲା ପରି ଅନେଇଚ। ତାଙ୍କ ଶଶୁର ଘର ସହ ଶେଷରେ ମାଲି ମକଦ୍ଦମା ହେଲା ନାହିଁ?'' ବିଷ୍ଣୁ ବାବୁ ଏଡ଼େ ବଡ଼ ବଡ଼ ଆଖି କରି ଆଁକରି ଅନେଇ ମୁଣ୍ଡ ଟୁଙ୍ଗାରୁ ଥିଲା। ମା' ସେଇଠୁ ଯୋଡ଼ିଲା, ତମର ଆଉ ଗୋଟେ ମାଉସୀ ଅନୁଗୁଳ ନା କୋଉଠି ବାହା ହୋଇଥିଲା ନା? ସେ ମଉସା ଟାଟାରେ ଚାକିରି କରୁଥିଲେ।'' କଥାରେ ବାଧା ଦେଇ ବିଷ୍ଣୁ ବାବୁ କହି ଉଠିଲେ, ଆରେ- ଆପଣ ସତରେ ପୁରୀ ମାଦଳାପାଞ୍ଜିର ବଡ଼ ବାପା; ସତରେ ମା ଆପଣଙ୍କୁ ଜୁହାର।'' କହି କହି ତା' ବେଗ୍ ଖଣ୍ଡକ ଧରି ଦାଣ୍ଡକୁ ବାହାରିଲା। ସେ ଗଲା ପରେ ମା କହିଲା- ''ତରତରରେ ପଳେଇଲା କାହିଁକି ଜାଣୁ, ସେଇ ମଉସା ଟାଟାରେ ଆଉ ଗୋଟେ ସାନ୍ତାଳ ମାଇକିନାକୁ ନେଇ ରହିଗଲା।''

ଏ ହେଲା ପ୍ରଥମ ଦେଖା। ତା'ପରେ ହଠାତ୍ ଦିନେ ମୋ ତିନି ବର୍ଷର ପୁଅ ମୁନୁକୁ ସକାଳୁ ଗୋଟେ ବାନ୍ତି ହେଲା। ଖାଇଲା ନାହିଁ କିଛି। ଚେଷ୍ଟାକରି ଯେଉଁ ଦୁଧ ଦି'ଚାମଚ ଦିଆହେଲା ତାକୁ ମଧ ବାନ୍ତି କରି ପକାଇଲା। ମୁଁ ଧାଇଁଗଲି ଅଫିସ ଯିବା ରାସ୍ତାରେ ଡାକ୍ତରଖାନା। ଡାକ୍ତରଙ୍କଠାରୁ ଔଷଧ ଲେଖାଇ ବିଷ୍ଣୁ ବାବୁ ସହ କଥାବାର୍ତ୍ତା କରି ଔଷଧ ନେଇ ଫେରିବା ବେଳକୁ ବିଷ୍ଣୁ ବାବୁ ଆସି ଘରେ। ସେତେବେଳକୁ ଆଉ ଦୁଇ ଥର ମୁନୁକୁ ବାନ୍ତି ହୋଇଗଲାଣି। ବିଷ୍ଣୁ ବାବୁ ଔଷଧଟା ଖୁଆଇ ଦେଇ କହିଲେ, ''ଡାକ୍ତରଖାନା ନେଇଯିବା। ଏତେଗୁଡ଼ାଏ ବାନ୍ତି ହେଲାଣି। ଡିହାଇଡ୍ରେସନ ହୋଇଯିବ।'' ପିଲାଟା କାଇଲା ଦେଖାଯାଉଥିଲା। ଗଲୁ। ଦିନରେ ଦୁଇଟା ସାଲାଇନ ଦିଆଗଲା। ପଚା ଗନ୍ଧସହ ଗୋଟେ ପାଣିପରି ପାଇଖାନା ହେଲା। ସନ୍ଧ୍ୟାବେଳକୁ ଆଉ ଦୁଇଟା ଇଞ୍ଜେକ୍ସନ ଦେବା ପରେ ଫେରିଲୁ। ଡାକ୍ତର କହିଲେ କିଛି ଇନ୍‌ଫେକ୍ସନ ହୋଇଯାଇଚି। ଇଞ୍ଜେକ୍ସନ ଲେଖିଦେଲେ, ଦିନକୁ ତିନିଟା। ଭାଗ୍ୟ ଭଲ, ବିଷ୍ଣୁ ବାବୁ ସବୁ ଚଳାଇନେଲେ।

ଯା'ଭିତରେ ବିଷ୍ଣୁ ବାବୁ ଆମର ନିଜର ଲୋକ ହୋଇ ଯାଇଥିଲେ। ଭୁବନେଶ୍ୱର ରହିବା ଦିନଗୁଡ଼ାକର ଡାକ୍ତରଖାନା କାମପାଇଁ ମୋତେ ଆଉ କଷ୍ଟ କରିବାକୁ ପଡ଼ିନି। ଯାହା ଯେତେବେଳେ ଦରକାର ହେଲା ବିଷ୍ଣୁ ବାବୁଙ୍କୁ ଖବର ଦେଲେ, ସବୁ ତୁଲାଉ ନେଉଥିଲେ। କିନ୍ତୁ ଗୋଟେ ଅସୁବିଧା ରହିଗଲା। ସେଇ ଇଞ୍ଜେକ୍ସନ୍ ଆଉ ଡାକ୍ତରଖାନା ଯିବା ପରଠାରୁ ବିଷ୍ଣୁ ବାବୁ ଆଉ ମୁନୁର ଅହି-ନକୁଳ ସମ୍ପର୍କ ହୋଇଗଲା। ବିଷ୍ଣୁ ବାବୁଙ୍କୁ ଦେଖିଲେ ମୁନୁ ଆମର ଲୁଚିଲା।

ମୋ ମା' ସେଦିନ ବାହାରିଲା ବିଷ୍ଣୁ ବାବୁ ଘରକୁ ବୁଲି ଯିବାକୁ। ମୋତେ କହିଲା, ''ଚାଲ, ଲୋକଟା ଏତେ ଆମର ଉପକାର କରୁଚି ବନ୍ଧୁ ବାନ୍ଧବ ବି ହେବ, ସେ ମର୍ଦ୍ଧରାଜପୁର ସମ୍ପର୍କରୁ, କିଛି ମିଠା ଫଳ ନେଇ ପିଲାପିଲିଙ୍କୁ ଦେଖିଆସିବା।'' ବିଷ୍ଣୁ ବାବୁ କେତେବେଳେ ଘରେ ଥିବ ମୁଁ ଅନୁମାନ କରିପାରିଲି ନାହିଁ। ସିଏ ନ ଥିଲାବେଳେ ତାଙ୍କ ଘରେ ଆମକୁ ଚିହ୍ନିବ କିଏ ? ''ମୁଁ ଆଗରୁ ଖବରଦିଏ ଯିବା'', କହିବା ବେଳକୁ ମା' କହିଲା- ''ନାହିଁ ଚାଲୁନୁ, ସିଏ ଥିଲେ ଥିବ ନ ଥିଲେ ନାହିଁ। ଆମର ତ ତା' ଘରଲୋକ ସହ କାମ।'' ଆମେ ମିଠା, ଫଳ କିଛି ଧରି ଚାଲିଲୁ।

ଦାଣ୍ଡଘର କବାଟ ଖଟ ଖଟ କଲୁ, ଯେଉଁ ଭଦ୍ର ମହିଳା ଆସି କବାଟ ଖୋଲିଲେ ଦେଖିଲୁ ବିଷ୍ଣୁ ବାବୁର ସ୍ତ୍ରୀପାଇଁ ବେଶ୍ ବୟସ୍କା, ଏଣେ ମା'ପାଇଁ କମ୍‌ବୟସୀ। କିଛି ଠିକ୍ କରିପାରିଲୁ ନାହିଁ। କ'ଣ କହିବାକୁ ଯିବା ପୂର୍ବରୁ ସେ ଯେମିତି ଓଡ଼ିଆ କହିଲେ ଆମେ ଜାଣିଲୁ ସେ ଦକ୍ଷିଣୀ। ଆମକୁ ଭିତରକୁ ଡାକିନେଲେ ଆଦରକରି। ମା' ସଙ୍ଗେ ସଙ୍ଗେ ତାଙ୍କୁ ନିଜର କରିନେଲା। ଖବର ସଂଗ୍ରହ କରିନେଲା ଯେ ସେ ବିଷ୍ଣୁ ବାବୁଙ୍କ

ଦ୍ୱିତୀୟ ସ୍ତ୍ରୀ- କେରଳ ଅଧିବାସୀ । ଡାକ୍ତରଖାନାରେ ସେ ନର୍ସ କାମ କରନ୍ତି । ବିବାହ ଆଜକୁ ପ୍ରାୟ ଚଉଦ ବର୍ଷ ହେଲାଣି, ପିଲାପିଲି ନାହିଁ । ପ୍ରଥମ ସ୍ତ୍ରୀର ପୁଅଟିଏ ଛୁଆବେଳେ ମାରା ଯାଇଥିଲା- ତା'ପରେ ଗାଁ ସହ ବିଷ୍ଣୁ ବାବୁର କିଛି ସମ୍ପର୍କ ନାହିଁ ।

ତାଙ୍କୁ ଘରକୁ ଆସିବାକୁ ନିମନ୍ତ୍ରଣ ଦେଇ ଆମେ ଫେରିଆସିବାବେଳକୁ ବିଷ୍ଣୁ ବାବୁ ଆମ ଦାଣ୍ଡ ବାରଣ୍ଡାରେ । କବାଟ ଆର ପାଖରେ କବାଟକୁ ଜୋର୍‌କରି ଠେଲି ଧରିଚି ମୁନୁ । ଖୋଲିବାକୁ ଦଉନି । ଭେଁ ଭେଁ କାନ୍ଦ ଲଗାଇଚି । ବିଷ୍ଣୁ ବାବୁ ବାରଣ୍ଡାରେ ସେଇ କବାଟ ଫାଙ୍କରେ ବିନୟ ହେଲାପରି କହୁଥିଲେ, ''ନାଇଁରେ ବାପ ମୁଁ କିଛି କରିବିନିରେ ବାପ । ଇଞ୍ଜେକ୍‌ସନ କଣ ମୁଁ ଧରିଚି ! ଦେଖ ମୋ ହାତକୁ ଦେଖ, କିଛି ନାହିଁ । ଖୋଲେ କବାଟ ଖୋଲ ।''

ତାଙ୍କ ସ୍ୱରରେ ହଠାତ୍ ମୁଁ ଅନୁଭବ କଲି ଏକ ପିତୃତ୍ୱର କାରୁଣ୍ୟ । ସେ ଆମକୁ ଦେଖି ମୁହଁ ବୁଲାଇ ଠିଆ ହେଲେ । ଚାହିଁଲେ ରାସ୍ତାଆଡ଼କୁ । କହୁଥିଲେ ହସି ହସି ''ସମସ୍ତଙ୍କ ଘରେ ପିଲାଏ ଏମିତି ମୋତେ ଦେଖିଲା ବେଳକୁ କାନ୍ଦନ୍ତି, ସବୁ ଦୁଆର ବନ୍ଦ ।'' ମୋପାଇଁ ଏକ କାରୁଣ୍ୟର ହସ ହସି ''ପରେ ଆସିବି'' କହି ତାପରେ ଆମର ଅନୁରୋଧ ସତ୍ତ୍ୱେ ସାଇକେଲ ପେଡ଼ାଲ ଉପରେ ଗୋଡ଼ ଦେଲେ ।



# ନଷ୍ଟକନ୍ୟା

ନରସିଂହ ମିଶ୍ରଙ୍କ ଘରେ ସକାଳୁ ଚୂଲି ଲାଗିନି। ସତେ ଯେପରି ବଂଶସାରାକୁ ଗୋଟେ ବିପତ୍ତି ମାଡ଼ି ବସିଚି। ଯେ ଯୁଆଡ଼େ ଚୁପ୍‌ମାରି ବସିଚନ୍ତି। ମିଶ୍ରେ ଠାକୁର ଘରେ କବାଟ ଆଉଜାଇ ସକାଳଟାରୁ ପଶିଚନ୍ତି। ତେଣେ ମିଶ୍ରାଣୀ ମଧ ତଦ୍ରୂପ, ରୋଷାଇ ପଟ ପଛ ବାରଣ୍ଡାରେ ବସି ଆଖିରୁ ଲୁହ ଗଡ଼ାଇ ଚାଲିଚନ୍ତି। ତାଙ୍କ ସାଙ୍ଗକୁ ମାଉସୀ ପିଉସୀ ଲେଖା ଯୋଖା ସବୁ ଲୋକଙ୍କର ଚୁ ଚୁ କରି ପଦେ ଦି'ପଦ, କଟାଘାକୁ ଲୁଣପରି ଭେଦି ଯାଉଚି। ମିଶ୍ରଙ୍କ ବଡ଼ ବୋହୂ ପିଲାଙ୍କୁ ଚୂଡ଼ା ଚିନି ଖୁଆଇ ସ୍କୁଲ ବିଦା କରିଦେଇ ନିଜ ଶୋଇବା ଘରେ। ଆଉ ସୁରେଶ କେବଳ ଏପଟ ସେପଟ ହେଉଚନ୍ତି। ନିଜ ମନକୁ ବୁଝାଇବାକୁ ଯାଇ ବାପାଙ୍କ ସହ ପଦୁଟିଏ କ'ଣ କଥା ହୋଇ ଦାଣ୍ଡଦୁଆର, ଅଗଣା, ବାଡ଼ି, କୂଅମୂଳ ଘୂରି ବୁଲୁଚନ୍ତି। ଭାବୁଚନ୍ତି- ''ହେଲେ ହେଲା, କଣ ହେଲା ସେଇଠୁ! ଆଜିକାଲି ଯୁଗରେ ଆଉ ଏମିତି ଧରି ବସିଲେ ହେବ। ଘରୁ ଗୋଡ଼ କାଢ଼ିଲା କଣ ହେଲା ସେଇଠୁ? ପେଟ ପୋଷ ନାହିଁ ଦୋଷ।'' ହେଲେ ନିଜ ମନ ବି ମାନୁ ନାହିଁ। ଚାକିରିଟା ବିଷୟରେ ତାଙ୍କର ଯାହା ଧାରଣା ଥିଲା ବାପା ନରସିଂହ ମିଶ୍ର ତାକୁ ଫେଣେଇ ଦେଲାରୁ ସେଇଟା ନିହାତି ଖରାପ ରୂପ ଧାରଣ କଲା। ସେଇଠୁ ସମସ୍ତଙ୍କୁ ଗୋଟେ ଦୁଃସମୟ ପଡ଼ିଚିବୋଲି ଧାରଣା।

କାଲି ରାତିରେ ଦିଲ୍ଲୀରୁ ଆସିଥିବା ସୁବ୍ରତ ମହାନ୍ତି ବାପାଙ୍କ ହାତରେ ଚିଠି ଦେଇ ଯାଇଥିଲା। ସମସ୍ତେ ଘରେ କିଛିଦିନ ହେଲା ବ୍ୟସ୍ତ ଥିଲେ, ରୀନା ପାଖରୁ ଚିଠି ନାହିଁ। ନରସିଂହ ମିଶ୍ରଙ୍କ ପ୍ରଥମ ପୁଅ ସୁରେଶ ପରେ ପାଞ୍ଚଟା ଝିଅ ପଛକୁ ପଛ ମାରା ପଡ଼ିଥିଲେ,

ଶେଷକୁ ରୀନା। ଝିଅଟା ଭଲ ପଢ଼ିଲା। ତଥାପି ଗାଁ ସ୍କୁଲରୁ କଲେଜ ଯିବା କଥାଟା ଗୋଟେ ବଡ଼ ଘଟଣା ହେଲା ମିଶ୍ରଙ୍କ ବଂଶରେ। ବାପ ଗୋସବାପ ଅମଳରୁ ମିଶ୍ରଙ୍କ ବଂଶରୁ ଝିଅ ଗୋଡ଼କାଢ଼ି ପଦାକୁ ଯାଇ ନ ଥିଲେ। ରୀନା କଲେଜ ପଢ଼ା ବିଷୟରେ କିନ୍ତୁ ହାଇସ୍କୁଲ ହେଡ୍‌ମାଷ୍ଟ୍ରଙ୍କ ସହ ସବୁ ମାଷ୍ଟ୍ରମାନେ ଅଡ଼ି ବସିଲେ। ବୋର୍ଡ ପରୀକ୍ଷାରେ ତୃତୀୟ ସ୍ଥାନ ରଖିଚି- ଏମିତି ପିଲାକୁ କଲେଜ ପଠାଇବାକୁ ହେବ। ସୁରେଶ ନିଜେ ଦୁଇ ଥର ମେଟ୍ରିକ୍ ପରୀକ୍ଷା ପରେ କଲେଜରେ ନାଁ ଲେଖାଇ, ଚାରି ବର୍ଷ ପରେ ସୁଦ୍ଧା କିଛି ନ ହେଲାରୁ ଗାଁକୁ ଫେରିଆସି ଜମିଜମା ଓ ଦୋକାନ କାମରେ ନିଜକୁ ଲଗାଇ ଦେଇଥିଲେ। ହେଲେ ଭଉଣୀ ଭଲ ପଢୁଚି, ଏଣୁ ବାପାଙ୍କ ସହ ଯୁକ୍ତି କରି ତାଙ୍କୁ ରାଜି କରାଇ ନେଇ କଟକ କଲେଜରେ ଭର୍ତ୍ତି କରି ଆସିଥିଲେ। ତା'ପରେ ରୀନାର ନାମ ଡାକ- ଖେଳ, ଡିବେଟ୍ ଇତ୍ୟାଦି ସବୁଥିରେ ସେ ପାରଙ୍ଗମ। ତା' ସାଙ୍ଗକୁ ପଢ଼ା ବି। ଆଇ.ଏ. ଆଉ ବି.ଏ.ରେ ୟୁନିଭର୍ସିଟିରେ ପ୍ରଥମ ଶ୍ରେଣୀରେ ସେଇମିତି ଦ୍ୱିତୀୟ, ତୃତୀୟ ହୋଇ ପାସ୍‌କଲା। ବ୍ରାହ୍ମଣ ଘର ଝିଅ। ମା ଇନ୍ଦୁମତୀ ତ ଗୋଟେ ଚାଉଳରେ ଗଢ଼ା; ତା' ସାଙ୍ଗକୁ ନରସିଂହ ମିଶ୍ରଙ୍କ ଖଣ୍ଡାଧାର ନାକ ଆଉ ଗୋରା ତକ ତକ ଚେହେରା। ରୀନା ବାପ ମା'ଙ୍କ ଅଣିରେ କଲେଜ ସୁନ୍ଦରୀ।

ତା'ପରେ ସେଇଠୁ ସେ ଯେତେବେଳେ ଦିଲ୍ଲୀ ଗଲା ପଢ଼ିବାକୁ, ଆଉ ଆକଟ କରିବା ଅବସ୍ଥା ନ ଥିଲା ଭାଇ ଓ ବାପାଙ୍କର। ଯେଉଁ ବନ୍ଧୁ ବାନ୍ଧବ ଚିହ୍ନା ପରିଚୟ ସହରରେ ରହନ୍ତି; କି ସହରକୁ ଯିବା ଆସିବା କରନ୍ତି, ସମସ୍ତଙ୍କର ସେଇ ଗୋଟିଏ କଥା, ରୀନା ପଢ଼ିଲେ କେଡ଼େ ବଡ଼ ଚାକିରି କରିବ, କଲେକ୍ଟର୍ ହେବ।

ହଠାତ୍ ଏଇ ସବୁ ଆଶାକୁ ଚୂର୍ଣ୍ଣବିଚୂର୍ଣ୍ଣ କରି ରୀନା ଲେଖିଲା, ସେ ଏୟାର ହୋଷ୍ଟେସ୍ ଚାକିରିରେ ଜଏନ କରିଚି। ରଘୁଭାଇନା ପୁଅ ମହେନ୍ଦ୍ର ଦିଲ୍ଲୀରେ ପାଠ ପଢୁଥିଲା। ଏମ୍.ପି.ଙ୍କ ପୁଅ ବୋଲି ତାକୁ ଲଣ୍ଡନ ପଠାଇବାକୁ ମଧ କିଛି ଅସୁବିଧା ହୋଇ ନ ଥିଲା ସେତେବେଳେ। ସେ ଫେରିଆସି ଓକିଲାତି କଲା କଟକରେ। ତା'ରିଠାରୁ ନରସିଂହ ମିଶ୍ର ବିଦେଶ କଥା ସବୁ ଶୁଣିଥିଲେ। ସେଇ କହିଥିଲା 'ଏୟାର ହୋଷ୍ଟେସ୍' ମାନେ ହୋଟେଲରେ ଯେମିତି ଚାକରାଣୀ ବାସନ ଉଠାନ୍ତି କି ଟେବୁଲ ସଫା କରନ୍ତି, ସେମିତି ଏରୋପ୍ଲେନର ଚାକରାଣୀ। ଏଣୁ ଆଜି ତାଙ୍କ ବଂଶର ବୁଦ୍ଧିମତୀ କଲେକ୍ଟର୍ ହେବା ଝିଅ, ହଠାତ୍ ଚାକରାଣୀ କାମକୁ ଧରି ବସିଲା। ଏଇଟା ସାରା ବଂଶପାଇଁ ବିପତ୍ତି ନୁହେଁ ଆଉ କ'ଣ ?

ଦିନ ଗଲା। ନରସିଂହ ମିଶ୍ର ସମସ୍ତଙ୍କୁ ଡାକି କହିଲେ, "ଜାଣ ଆଜିଠାରୁ ମୋର ଝିଅ ନାହିଁ, ତାକୁ ତ୍ୟାଗ କଲି ବୋଲି ଧର।" ସ୍ତ୍ରୀକୁ ଉଠାଇ କହିଲେ ଖାଅ ପିଅ। କାନ୍ଦିଲେ ଭଲ ହେବ ନାହିଁ। ସମସ୍ତଙ୍କୁ ମନା ହେଲା "ଝିଅକୁ ଚିଠିପତ୍ର ଲେଖିବା ଦରକାର

ନାହିଁ, କୁଳର ଅଙ୍ଗାର ସେଇଟା।'' ସତରେ ଚିଠିର କେହି ଉତ୍ତର ବି ଦେଲେ ନାହିଁ। ଇଏ ମାତ୍ର ଗଲା ଛ'ମାସ ତଳର ଘଟଣା।

ହଠାତ୍ ଖବର ଆସିଲା ଦିଲ୍ଲୀରୁ ଲଣ୍ଡନ ଯିବା ଏରୋପ୍ଲେନରେ ବମ୍ ଫାଟି ସମସ୍ତେ ମୃତ୍ୟୁ ମୁଖରେ, ଆଉ ସେଇ ଏରୋପ୍ଲେନରେ ଥିଲା ରୀନା ମିଶ୍ର।

ଘରେ କାନ୍ଦବୋବାଳି ପଡ଼ିଗଲା। ଯେତେହେଲେ ବି ଝିଅ। ନରସିଂହ ମିଶ୍ର କାନ୍ଦିଲେ ଦି'ଧାର। ହେଲେ ମନେ ମନେ ଭାବିଲେ ଅକର୍ମ କଲେ ଫଳ କଣ ଦେଖ! ଗୁରୁଜନଙ୍କ କଥା ଅମାନ୍ୟ କରିବାର ଫଳ ଏଇଆ। ପୁଅ ସୁରେଶକୁ ବାରମ୍ବାର ଡାକି ସେ ଶୁଣାଇ ଯାଉଥିଲେ ସେଇ ଗୋଟିଏ କଥା- ''ଦେଖିଲୁ ବଂଶର ଅଭିସଂପାତର ଫଳ? ସାରା ବଂଶକୁ ନଷ୍ଟ କରି ଦେଇଥାଆନ୍ତା- ମଲା ନାହିଁ ଯେ ବଂଶକୁ ବଦନାମରୁ ରକ୍ଷା ମିଳିଗଲା।''

କିନ୍ତୁ ବର୍ଷକ ଭିତରେ ନରସିଂହ ମିଶ୍ରଙ୍କ ବଂଶ ହଠାତ୍ ସୁନାମ କରିଗଲେ ଯେମିତି। ଘରଦ୍ୱାର ସବୁ ବଦଳିଗଲା। ସାମ୍ନାପଟ ଘର ତିଆରି ହେଲା, ପକ୍କା ଘର। ମୋଜାଇକ୍ ଚଟାଣ। କାନ୍ଥରେ ରଙ୍ଗ। ଘରର ନାମ ରହିଲା 'ରୀନା ମହଲ'। ଲୁଗାପଟା ଚାଲିଚଳଣ ଖିଆପିଆ ସବୁ ଯେମିତି ପରିବର୍ତ୍ତନ ହୋଇଗଲା। ସୁରେଶ ଆଉ ଚାଷବାସ ନିଜେ କରିବା ବନ୍ଦ କରିଦେଲେ। ହଳିଆ ମୂଲିଆଙ୍କୁ ତଦାରଖ କରିବାପାଇଁ ଗୁମାସ୍ତା ଜଣେ ରହିଲେ। ଲୁଗା ଦୋକାନର ହୁଲିଆ ବଦଳିଗଲା ପୂରା। ଆଉ ସେ ଗଦି ଉପରେ ଖୋର୍ଦ୍ଧା ଲୁଙ୍ଗି ଗାମୁଛା କି ତନ୍ତ ଶାଢ଼ି ନାହିଁ। ବର୍ତ୍ତମାନ ପକ୍କା ଘରେ ମିଲ୍ ଲୁଗା, ପେଣ୍ଟ ସାର୍ଟ ଆଉ ପଛ ପଟକୁ ଗୋଟେ କାଚ ଦ୍ୱାର ଲଗା ରୁମରେ ଅଫିସ୍- ସୁରେଶ ବାବୁଙ୍କ ଅଫିସ। ଚାକର ବାକର ବିକ୍ରି କରୁଚନ୍ତି। ସୁରେଶ ବାବୁ ଭିତର ଘରେ ଅଫିସରେ ବସି ହିସାବ ଲେଖନ୍ତି। ଦୋକାନର ନାଁ ଦିଆ ହୋଇଚି 'ରୀନା କ୍ଲଥ ଷ୍ଟୋର'।

କଥା କଣ ସମସ୍ତେ ଅବଶ୍ୟ ଜାଣି ପାରିଲେ ନାହିଁ। ହେଲେ ସୁରେଶ ବାବୁଙ୍କ ପେଟରେ କଥା ରହେ ନାହିଁ। କହୁଁ କହୁଁ ସେଦିନ ସେ କହି ପକାଇଲେ- ''ରୀନାର ମୃତ୍ୟୁରେ ସରକାରଙ୍କ ତରଫରୁ ଯେତେସବୁ କ୍ଷତି ପୂରଣ ମିଳିଲା ସବୁ ମିଶି କୋଡ଼ିଏ/ପଚିଶ ଲକ୍ଷ ଟଙ୍କା। ରୀନା ବଞ୍ଚି ରହି ବଂଶକୁ ବୁଡ଼ାଇ ଦେଇଥିଲା ସିନା, କିନ୍ତୁ ମରି ବଂଶକୁ ଟେକିଦେଲା କେମିତି ଦେଖିଲ।''

ନରସିଂହ ମିଶ୍ରେ କିନ୍ତୁ ଆଉ ବାହାରକୁ ବାହାରିବାର ଦେଖାଗଲା ନାଇଁ। ବେଶୀହେଲେ ଦାଣ୍ଡ ବାରଣ୍ଡାରେ ବସିଥିବାର କେତେବେଳେ କେମିତି କିଏ ଦେଖନ୍ତି। ଆଖିରେ ଧାରେ ଲୁହ, ଆଉ ଦୃଷ୍ଟି ଆକାଶର ନୀଳିମା ଭିତରେ ନିର୍ଲିପ୍ତ- ରୀନା ତାଙ୍କର ସେଇ ଆକାଶରୁ ଓହ୍ଲାଇ ଆସିବ ଯେମିତି।



# ଅପରାଧୀ

ମୁକୁଳ ବାବୁ, ମୁଁ ଜାଣେ ସବୁଦିନେ ଡେରିରେ ଉଠେ। ମୋତେ ବଡ଼ ଭାଇ ବୋଲି ଡାକେ। ଏଣୁ ମୁକୁଳଙ୍କୁ ବାବୁ ସମ୍ବୋଧନ କଲେ ବି କଥାରେ ମୁଁ ତାକୁ ତମେ କୁହେ। ଏଣୁ ଆଜି ସକାଳୁ, ମାନେ ଆଠଟା ବେଳକୁ ତା' ଦ୍ୱାରେ ଆସି ଘଣ୍ଟି ବଜାଇ, 'ମୁକୁଳ ବାବୁ, ମୁକୁଳ ବାବୁ' ପାଟି କଲାବେଳେ, ତାର କର୍ମନିପୁଣା ସ୍ତ୍ରୀ ସୁନନ୍ଦାକୁ ଆଶା କରୁଥିବାବେଳେ, ମୁକୁଳଙ୍କୁ ପେଣ୍ଟ ସାର୍ଟ ଜୋତା ପିନ୍ଧି ବାହାରି ଆସିବାର ଦେଖି ଆଶ୍ଚର୍ଯ୍ୟ ହେଲି। ଏକେ ତ ଆଜି ରବିବାର, ମାନେ କାଲି କ୍ଲବରେ ନିଶ୍ଚେ ଡେରି ହୋଇଥିବ। ତା' ସତ୍ତ୍ୱେ ମୁକୁଳ ବାବୁ ରେଡି।

ମୋତେ ଦେଖି ମନଖୋଲା ହସଟିଏ ହସୁ ହସୁ- ''ଆରେ ଆସନ୍ତୁ ଆସନ୍ତୁ,'' କହି ଭିତର ବାରଣ୍ଡାକୁ ଟାଣିନେଲା, ଯେଉଁଠି ସମସ୍ତେ ବସି ଟି.ଭି. ଦେଖନ୍ତି, ଗପ କରନ୍ତି। ମୁଁ ନାହିଁ ନାହିଁ କରୁ କରୁ କହିଲି- ''ଥାଉ। ତମେ କୁଆଡ଼େ ଦରକାରୀ କାମରେ ନିଶ୍ଚେ ବାହାରିଚ, ମୋର କିଛି କାମ ନାହିଁ। ହେଲେ ସେ ଛାଡ଼ିବା ପିଲା ନୁହଁ। ତା' ତିନି ପୁଅ। ଅଙ୍କଲ ଅଙ୍କଲ କହି ଧାଇଁ ଆସି ନଛୋଡ଼ବନ୍ଦା। ଅଙ୍କଲ ଶିକାର ଗପ କହିବେ। ମୋତେ ଦେଖିଲେ ପଢ଼ା କଥା ଏପରିକି ଟି.ଭି. ଛାଡ଼ି ତା' ତିନି ପୁଅ ସାତ ବର୍ଷରୁ ଚାରି ବର୍ଷ ବୟସର, ବସିଯିବେ ଶିକାର ଗପ ଶୁଣିବାକୁ।

ମୁଁ ସୋଫାଟା ଉପରେ ବସିପଡ଼ି ଇଂରାଜୀ ଦୈନିକ ଟେଲିଗ୍ରାଫ୍‌ଟାକୁ ଧରୁ ଧରୁ ପିଲାଙ୍କୁ ଟି.ଭି.ରେ ଗୋଟେ ଜନ୍ତୁମାନଙ୍କର ପ୍ରୋଗ୍ରାମରେ ବସାଇ ଦେଇ ମୁକୁଳ ବାବୁ ଆସି ମୋ ପାଖରେ ବସି ପଡ଼ିଲା। ସ୍ତ୍ରୀକୁ ଚା'ର ବରାଦ କରି ପଚାରି ବସିଲା-

''ପ୍ରଥମେ କୁହନ୍ତୁ କୁଆଡ଼େ ଆସିଲେ ?'' ମୁଁ ଅଗତ୍ୟା ଆଉ ଭଦ୍ରତା ଖାତିରରେ ଖାଲି ବୁଲିବାକୁ ବୋଲି ନ କହି ମୋ ଆସିବା ଉଦ୍ଦେଶ୍ୟଟି କହିଲି। ତାଙ୍କ ଘର ପଛଆଡ଼େ ଯେଉଁ କଦଳୀ ବଣ ଅଛି ତା' ପଛପଟେ ଗୋଟେ ଆଉଟ୍ ହାଉସରେ ଛୋଟା ରିକ୍ସାବାଲାଟିଏ ଅଛି। ସେ ତାଙ୍କ ତିନି ପିଲାକୁ ସ୍କୁଲ ନିଏ। ମୁଁ କହିବାକୁ ଆସିଥିଲି ଆମ ରିକ୍ସାବାଲା ନିହାତି ବଦମାସୀ କରୁଚି; କେଉଁଦିନ ଆସୁଚି ତ କେଉଁଦିନ ଡେରି କରୁଚି। ଏଣୁ ଆମ ପିଲାଙ୍କୁ ମଧ ନେଉ। ଗୋଟେ ରିକ୍ସାରେ ଆରାମରେ ପାଞ୍ଚ ଜଣ ଯାଇପାରିବେ। ଏତେବେଳକୁ ତା' ସ୍ତ୍ରୀ ଚା' ବିସ୍କୁଟ ନେଇ ଆସି ପହଞ୍ଚି ଯାଇଥିଲେ। ମୁକୁଲ କିଛି କହିବା ପୂର୍ବରୁ ସେ କହିଲେ- ''ନିଶ୍ଚେ ଯିବ। ଆପଣଙ୍କ ପିଲାମାନଙ୍କ ସଙ୍ଗରେ ରହିଲେ ଭଲ। ଏ ଦୁଷ୍ଟଗୁଡ଼ାକୁ ଆପଣଙ୍କ ପିଲାଏ ସାଙ୍ଗରେ ଥିଲେ ଟିକେ କଣ୍ଟ୍ରୋଲ କରିବେ।''

ଚା' ପିଇ ବାହାରିବା ବେଳକୁ ମୁକୁଲ ବାବୁଙ୍କୁ ପଚାରିଲି- ''ତମେ ଆଜି କାହିଁକି ସକାଳୁ ସକାଳୁ ବାହାରିଚ ?'' ସେ ବାହାରିଥିଲା କଟକ, ଗୋଟେ ବରଯାତ୍ରୀରେ ଯିବାର ଅଛି ଦିନ ଦଶଟାସୁଦ୍ଧା। କହିଲା! ବହୁଦିନରୁ ପରିଚୟ। ଏମିତି ବା କିଏ ଅଛି ଯେ ମୋର ଅଚିହ୍ନା ଅଥଚ ତାକୁ ଯିବାକୁ ହେବ! ଆମ ଦୁଇ ଜଣଙ୍କ ସମ୍ପର୍କ ଏପରି ଥିଲା ଯେ ଆମେ ପ୍ରାୟ ପରସ୍ପରର ବନ୍ଧୁ ବାନ୍ଧବ ସମସ୍ତଙ୍କୁ ଜାଣିଥିଲୁ ସେ ଅନୁମାନ କରି କହିଲା- ''ଆପଣ ଚିହ୍ନିବେ ନାହିଁ, ତାଙ୍କ ବାପା ମୋ ବାପାଙ୍କ ବସ୍ ଥିଲେ। ଏଣୁ ବାପା ବାଧ କଲାରୁ ଯିବାକୁ ପଡୁଚି।'' ମୁଁ ଖୁସି ହୋଇଗଲି କାରଣ ମୁଁ ମଧ ବାହାରିଥିଲି କଟକ। ଜଣେ ବନ୍ଧୁଙ୍କୁ କହିଥିଲି ତାଙ୍କ ଗାଡ଼ିରେ ନେଇଯିବାପାଇଁ। ସେ କିନ୍ତୁ ଦିନ ବାରଟାପରେ ବାହାରିବେ କହିବାରୁ ମୁଁ କ'ଣ କରିବି ଠିକ୍ କରିପାରୁ ନ ଥିଲି। ମୁକୁଲ ବାବୁଙ୍କୁ ପଚାରିଲି- ''ତମ ସଙ୍ଗରେ ଆଉ କିଏ ଅଛନ୍ତି କି- ମୋତେ ସଙ୍ଗରେ ନେଲେ କିଛି ଅସୁବିଧା। ମୁଁ ଲିଙ୍କରୋଡ଼ରେ ଓହ୍ଲାଇ ଯିବି, ଗୋଟେ ଓକିଲ ସହ ପରାମର୍ଶ ଅଛି।'' ସେ ବି ଖୁସି ହୋଇଗଲା, କାରଣ ତାକୁ ମଧ ରାସ୍ତାରେ ଗୋଟେ ସାଙ୍ଗ ମିଳିଗଲା। ''ମୁଁ ଘରେ ରେଡ଼ିହୋଇ ଅପେକ୍ଷା କରିଥିବି।'' କହିଲାବେଳକୁ ସେ କହିଲା- ''ମୁଁ ବାହାରିଲିଣି। ଆପଣଙ୍କର କେତେ ଡେରି ହେବ ?'' ମୁଁ କହିଲି- ''ତା'ହେଲେ ମୁଁ ଘରକୁ ଯିବା ଦରକାର ନାହିଁ; ମୁଁ ତ ବାହାରି ଆସିଥିଲି।'' ସେ ବାରଣ୍ଡାରୁ ଉଠିବାବେଳକୁ ମୁଁ କହିଲି, ''ତମେ ମୋ ସାମ୍ନାରେ ତମ ରିକ୍ସାବାଲାକୁ ଡାକି କହିଦେଲେ ଭଲ ହୁଅନ୍ତା।'' ସେ ହଠାତ୍ ନୀରବ ହୋଇଗଲା। ମୋତେ ଜଣାଗଲା ଯେପରି ଏକ ଭାବାନ୍ତର। ଟିକିଏ ପରେ ତା ସ୍ତ୍ରୀକୁ ପାଟି କରି ଡାକିଲା ଆଉ କହିଲା- ''ମୁଁ ଗାଡ଼ି ବାହାର କରୁଚି, ତମେ ସେ ରିକ୍ସାବାଲାକୁ ଡାକି ସାମ୍ନାସାମ୍ନି ସବୁ ଫାଇନାଲ୍ କରିଦିଅ, ଟାଇମଟା ଆଉ ପଇସା ବି ଛିଡ଼ାଇ ଦିଅ।'' କହିସାରି ସେ ଘର ଭିତରକୁ ଗଲା। ତା' ସ୍ତ୍ରୀ ଚାକର ପିଲା ହାତରେ ରିକ୍ସାବାଲାକୁ ଡକାଇ ପଠାଇ, ସେ ଆସିବା ଭିତରେ ମୋ ସଂଶୟଟା ଦୂର କରିଦେଲେ। କହିଲେ-

''ଯେ ଡାକିଲେ ସେ ରିକ୍ସାବାଲା ସାମ୍ନାକୁ ଆସେ ନାହିଁ; ଆଉ ଆଜିକାଲି ଯେ ବି ତାକୁ ଡାକନ୍ତି ନାହିଁ।'' ମୁଁ ଆଶ୍ଚର୍ଯ୍ୟ ହୋଇ କାହିଁକିର କାରଣ ଜାଣିବା ପୂର୍ବରୁ ରିକ୍ସାବାଲା ଛୋଟେଇ ଛୋଟେଇ ଆସି ପହଞ୍ଚିଗଲା। ତା' ସହ କଥାବାର୍ତ୍ତା ଛିଡ଼ିଲାବେଳକୁ ମୁକୁଲ ବାବୁ ପୋର୍ଟିକୋ ତଳେ ଗାଡ଼ିରେ ବସି ହର୍ଣ୍ଣ ମାରିଲେଣି।

ଆମେ ଟିକିଏ ବାଟ ଯାଇଚୁ କି ନାହିଁ, କହିଲି- ''କୁହ ଆଜି ତମ ରିକ୍ସାବାଲା ଗପ କହ।'' ସେ ଅଧା ଆଶ୍ଚର୍ଯ୍ୟ ପରି ମୋ ଆଡ଼କୁ ଚାହିଁ ହସିଦେଲା, ଆଉ ଆରମ୍ଭ କଲା :

''ମୋର ସେଇଟା କଲେଜରେ ପ୍ଲସ ଟୁ ଫାଇନାଲ। ବାପାଙ୍କ ପୋଷ୍ଟିଂ ସେତେବେଳେ ଢେଙ୍କାନାଳ। ଶୁକ୍ରବାର ଆସନ୍ତି ସୋମବାର ମଙ୍ଗଳବାର ଯାଆନ୍ତି। ଏତକ ସୁବିଧା ପାଇ ତାଙ୍କ ଡେପୁଟି ଡାଇରେକ୍ଟର ତାଙ୍କୁ ନାନା ଅର୍ଡର ମାରୁଥାଏ। ଏଟା ଆଣିଦେବ, ସେଟା ଆଣିଦେବ ଇତ୍ୟାଦି। ଆମ ବାପା ଗୋଟେ ଖୋସାମତିଆ ବୋଲି ମୋତେ ସବୁଦିନେ କଥାଟା ବାଧୁଥାଏ। ବିଚରା ବାପା ଆମମାନଙ୍କପାଇଁ ଭୁବନେଶ୍ୱରରୁ ଢେଙ୍କାନାଳ ଏମିତି ଧନ୍ଦି ହେଉଚନ୍ତି, ଏଣୁ ଡାଇରେକ୍ଟରଙ୍କ ବେଠି ସବୁ କରିବାକୁ ପଡୁଚି। ଦିନେ ଗୋଟେ କାମରେ ତାଙ୍କରି ଘରକୁ ବାପା ମୋତେ ପଠାଇଲେ ଚାରିଟା କଦଳୀ ପୂଆ ନେଇ ଦେଇ ଆସିବାକୁ। ବାପାଙ୍କ ମୁହଁରେ ନାହିଁ କରିପାରିଲି ନାହିଁ। ମନେ ମନେ ବାପାଙ୍କୁ ରାଗି ମାଗି ରିକ୍ସାଟେ କରି ଗଲି ସିନା ତିନି ନମ୍ବର ତାଙ୍କ କ୍ୱାର୍ଟର୍ସ ପାଖକୁ; କିନ୍ତୁ ମୋତେ ଭାରି ଲାଜ ଲାଗିଲା। ବାପାଙ୍କ 'ବସ୍' ବୋଲି କଣ ମୋର ବି 'ବସ୍'! କାଳେ ତାଙ୍କ ଘରେ ଆମ କଲେଜ ପଢୁଆ ପିଲା କି ଝିଅ ଥିବେ ; ଏଇ ଡରଟା ମୋତେ ଖାଇଗଲା। ତାଙ୍କ ଘର କିଛି ବାଟ ଅଛି, ମୁଁ ରିକ୍ସାକୁ ଅଟକାଇଲି, ଆଉ ତାଙ୍କ ଘରଟା ଦୂରରୁ ଦେଖାଇଦେଇ କହିଲି- ''ସେଇ ବାବୁଙ୍କ ଘରେ ଦେଇ ଆସେ। ମୁଁ ରାମ ମନ୍ଦିର ପାଖରେ ଥିବି।''

ରିକ୍ସା ତାଙ୍କ ଗେଟ ପର୍ଯ୍ୟନ୍ତ ପହଞ୍ଚି ଭିତରକୁ ପଶିବାଗ ଦେଖି ମୁଁ ପଛକୁ ପାଦ ପକାଇଲି। ରାମମନ୍ଦିର ପାଖରେ ଅପେକ୍ଷା କରିଚି। ଡେରି ଦେଖି ବ୍ୟସ୍ତ ହେଲି। ପଇସା ନେବାକୁ ତ ଆସିବ। ବେଶୀ ଡେରି ହେବାରୁ ଚାଲିଲା ଚାଲିଲା ହୋଇ ତାଙ୍କ ଗେଟ୍ ପର୍ଯ୍ୟନ୍ତ ଗଲି। ରିକ୍ସା ଫିକ୍ସା କିଛି ନାହିଁ। ଘରକୁ ଫେରିଲି।

ମାଡ଼ଟା ହେଲା ତା'ପରଦିନ ଅଫିସ ଫେରନ୍ତା। ମୁଁ ବାପାଙ୍କ ପାଟି ଶୁଣି କିଛି ଗୋଟେ ବିପତ୍ତି ଅନୁମାନ କରିନେଇଥିଲି। ଡାକ ଶୁଣି ବାପାଙ୍କ ସାମ୍ନାରେ ଛିଡ଼ା ହୋଇଚି କି ନାହିଁ ଠାଏ କରି ଚାପଡ଼ଟେ ବସିଲା। ମା' ଧାଇଁ ଆସିଲା। 'କ'ଣ ହେଲା? କଥା ନାହିଁ ବାର୍ତ୍ତା ନାହିଁ ଏମିତି ମାରି ପକାଉଚ କାହିଁକି?' ତା'ପରେ ଚାଲିଲା ଗର୍ଜନ ତର୍ଜନ। ତମମାନଙ୍କପାଇଁ କଣ ମୁଁ ନ କରୁଚି। ବାର ବରଷର ପୂଜା ମୋର ଗୋଟେ ଦିନରେ ନଷ୍ଟ କରିଦେଲା ଏଇ କୁଳାଙ୍ଗାର ପୁଅ।' ଏମିତି ଅଧଘଣ୍ଟାଏ ଚାଲିଲା ପରେ ଯାହା

ଜାଣିବାକୁ ପାଇଲି; ସେ ବଦମାସ ରିକ୍ସାବାଲା ତାଙ୍କ ଘରୁ ରିକ୍ସାଭଡ଼ା ଦଶ ଟଙ୍କା ମାଗିନେଇ ଆସିଚି। ମୋ ସହ ଛ'ଟଙ୍କା ଛିଡ଼ାଇଥିଲା, ବଦମାସ ସେଠୁ ଦଶ ଟଙ୍କା ମାରି ନେଇ ପଳେଇଚି। ସେଇଥିପାଇଁ ଆଉ ରାମମନ୍ଦିର ବାଟରେ ଆସି ନାହିଁ। ମନେ ମନେ ଭାବିଲି 'ହଁ ଏମିତି ଦଶଟା ଟଙ୍କା ଦେଇଦେଲେ ଡାଇରେକ୍ଟରଙ୍କ କଣ ଅଭାବ ପଡ଼ିଯାଉଚି ଯେ ବାପା ଏପରି ବ୍ୟସ୍ତ ହେଉଚନ୍ତି ?'

ମୁଁ ବି କ'ଣ ଛାଡ଼ିବା ଲୋକ। ତା' ଆରଦିନ ସକାଳୁ ସାଇକେଲ ଧରି ତାକୁ ଖୋଜି ବୁଲିଲି। କଲେଜ ନାଁ କହି, କଲେଜ ନ ଯାଇ ଖୋଜି ଖୋଜି ତାକୁ ଧରିଲି ରିଜିଓନାଲ କଲେଜ ପାଖରେ। ସେତେବେଳକୁ ମୋ ରାଗ ପଞ୍ଚମରେ। ବାପାଙ୍କ 'ବସ୍' ପାଖରେ ତାଙ୍କ ଅପମାନଟା ମୋ ଗାଲକୁ ଯେଉଁ ଭାବରେ ଆସିଥିଲା ତାର ଦଶ ଗୁଣ ହୋଇ ମୋ ହାତରୁ ତା' ଗାଲମୁଣ୍ଡ ପିଠି ଗୋଡ଼କୁ ଉଡାରି ହୋଇଗଲା। ଧାଇଁ ପଳାଇବା ବେଳକୁ ବୁଟ୍‌ସହ ତା' ଗୋଡ଼କୁ ମାଇଲି ଗୋଟେ ଗୋଇଠା ଯେ ସେଇ ରିକ୍ସା ଦେହରେ ଏମିତି ପୋପାଡ଼ି ହୋଇ ପଡ଼ିଲା, ରିକ୍ସା ଫ୍ରେମ ଭିତରେ ଗୋଟେ ଗୋଡ଼ ପଶି ମୋଡ଼ି ହୋଇ ଭାଙ୍ଗିଗଲା। ତା' କାନ୍ଦ ଶୁଣି ମୋର ହଠାତ୍ ଗରମ ଭାଙ୍ଗିଗଲା। ଲୋକସବୁ ଜମା ହୋଇଯିବାର ଦେଖି ମୁଁ 'ରିକ୍ସାବାଲାଟା ଚୋରିକରି ପଳାଇ ଆସିଚି' କହି ସାଇକେଲ ଧରି ଭାଗ୍।

ସେଦିନ ଡେରିରେ ଘରକୁ ଫେରି ଗଣ୍ଡେ ଖାଇଦେଇ, ପୁଣି କ୍ଲାସ ଅଛି କହି ପଳାଇଗଲି। କହିଦେଲି 'ଆସିବାକୁ ଡେରିହେବ, ପଣ୍ଡା ସାର୍ ତାଙ୍କ ଘରକୁ ଡାକିଚନ୍ତି ସନ୍ଧ୍ୟାବେଳେ।' ବାପା ମା' ଜାଣିଥିଲେ ପଣ୍ଡା ସାର୍ ପିଲାଙ୍କୁ ଘରକୁ ଡାକନ୍ତି, ଛୁଟିଦିନରେ କି ସନ୍ଧ୍ୟାବେଳକୁ। ଯାହାର ଯାହା ବୁଝିବାର ଥାଏ ସେ ଉପରେ ପଡ଼ି ବୁଝାଇ ଦିଅନ୍ତି, ଅଙ୍କ ସବୁ କରାଇ ଦିଅନ୍ତି।

'ତା'ପରେ କଥାଟା ଆହୁରି ସଙ୍ଗୀନ ହେଲା। ଭାଗ୍ୟକୁ ମୋ ବଡ଼ ବାପା ପୁଅ ଭାଇ ସେତେବେଳେ କ୍ୟାପିଟାଲ ପୋଲିସ ଷ୍ଟେସନରେ ସବ୍‌ଇନ୍ସପେକ୍ଟର। ସେ ସବୁ ସମ୍ଭାଳି ନେଲା। ବାପା ସେ ରିକ୍ସାବାଲାର ଚିକିତ୍ସା କରାଇଲେ, ଆଉ ଡାକ୍ତରଖାନାରୁ ବାହାରିବା ବେଳକୁ ସେ ଛୋଟେଇ ଛୋଟେଇ ଚାଲୁଚି। ତାକୁ ଆଣି ଆମରି ଆଉଟ୍ ହାଉସରେ ରଖିଲେ। ପ୍ରଥମେ ମୋ ଭଉଣୀମାନେ, ତା'ପରେ ମୋ ପିଲାମାନେ କଲେଜ, ସ୍କୁଲ ସବୁ ତା'ରି ରିକ୍ସାରେ ଯିବା ଆସିବା ''ଆଉ ଏମିତି ବି ଘର କାମରେ ସବୁଆଡ଼େ ଯାଏ ସେ।''

ମୁଁ ପଚାରିଲି- ''ତା' ପିଲା ଛୁଆ।'' ମୁକୁଳ ବାବୁ କହିଲେ, ''କେଜାଣି ବାହା ତ ହୋଇ ନାହିଁ। କଣ କରୁଚି କେଜାଣି। ମଝିରେ ମଝିରେ ମାସେ ଖଣ୍ଡେ ତା' ଗାଁକୁ ଆନ୍ଧ୍ର ଯାଇ ଫେରିଆସେ ଏଠିକି। ଥରେ ସେଇ ଯେଉଁ ମାଡ଼, ତା'ପରେ କେବେ ମୋ

ସାମ୍ନାକୁ ଆସେ ନାହିଁ, ଟିକିଏ ପରେ ପୁଣି କହିଲି- ''ଆଉ ଗୋଟେ ମଜା କଥା ଜାଣିଚନ୍ତି। ଆଜି ଯେଉଁ ବାହାଘରକୁ ଯାଉଚି ସେଇଟା ସେଇ ଡେପୁଟି ଡାଇରେକ୍ଟରଙ୍କ ସାନ ପୁଅ ବାହାଘର। ସେ ଚିଫ୍ ଡାଇରେକ୍ଟର ହୋଇ ରିଟାୟାର୍ କରି କଟକରେ ରହୁଚନ୍ତି।''

ବାପା ତ ସବୁଥିରେ ସେବେ ତାଙ୍କରି ଘରକୁ ଦଉଡୁଥିଲେ। ଲୋକଟା କିନ୍ତୁ ମନ୍ଦ ନୁହେଁ, ସବୁ ଖବର ରଖେ। ବୁଢ଼ାର ଏଇଟା ସାନ ପୁଅ- ବହୁ ବୟସରେ ବାହା ହେଉଚି। ଗାଁରୁ ବାପା ତ ଆସିପାରିବା କଥା ଉଠୁ ନାଇଁ, ଆଉ ଯିବା ଆସିବା କରିପାରୁ ନାହାନ୍ତି। ଗଲା ମାସ ଗାଡ଼ିରେ ନେଇ ଆସିବି ଦେହ ଦେଖାଇବାକୁ କହିଲାରୁ ଭାଇ ଭାଉଜମାନେ ଛାଡ଼ିଲେ ନାଇଁ କି ସେ ବି ଆସିବା ଅବସ୍ଥାରେ ନ ଥିଲେ।

ଟିକିଏ ରହି କହିଲା, ''ଭାବିଲି ଯାଇ ବରଯାତ୍ରୀରେ ମିଶିଗଲେ ମନ୍ଦ ହେବନି। ନା କଣ କହୁଚନ୍ତି ?'' ସେ ଗାଡ଼ି ଚଲାଉଥିଲା ଆଗକୁ ଚାହିଁ। ମୁଁ ତା ମୁହଁକୁ ଚାହିଁ ରହିଥିଲି।



# ଅନ୍ତରଙ୍ଗ ଅତୀତ

ସ୍ୱପ୍ନମୟ ଚକ୍ରବର୍ତ୍ତୀଙ୍କୁ ହୁଏତ କିଛି ପାଠକ ପଢ଼ିଥିବେ। ସେ ଅବଶ୍ୟ ବଙ୍ଗଳାରେ ଲେଖନ୍ତି କିନ୍ତୁ ଓଡ଼ିଆ ପଢ଼ିଛନ୍ତି ବହୁତ। କେଉଁଝର ଅଲ୍ ଇଣ୍ଡିଆ ରେଡ଼ିଓରେ ସେ ବହୁଦିନ ଥିଲେ ଷ୍ଟେସନ ଡାଇରେକ୍ଟର। ସେଇ ସୂତ୍ରରେ ଓଡ଼ିଆ ସାହିତ୍ୟ ସହ ପରିଚୟ। ସେଦିନ ସାଙ୍ଗ ହୋଇ ତାଙ୍କ ସହ ଫେରୁଥିଲୁ ଚିନସୁରାରୁ କଲିକତା। ଚିନ୍‌ସୁରାରେ ଏକ ସାହିତ୍ୟ ସଭାରୁ ଫେରିବା ରାସ୍ତାରେ ଗୋଟେ ଜାଗାରେ ଗାଡ଼ି ଆମର ଅଟକି ଯାଇଥିଲା 'ଜାମ' ଭିତରେ। ପୂଜା ଲେଖା ସମ୍ବନ୍ଧରେ କଥାବାର୍ତ୍ତା କରୁ କରୁ ସେ କହୁଥିଲେ ତାଙ୍କର ଗୋଟିଏ ନୂଆ ନଭେଲ କଥା। ଓଡ଼ିଆ ପିଲା। କଲିକତା ମାଟିରେ ଚା' ଦୋକାନରୁ ତାର ଜୀବନ ଆରମ୍ଭ- ଆଉ ଶେଷରେ ଏଇ କଲିକତା ମାଟିରେ ପଲିଟିକ୍ସ କରି କିପରି ସେ ଜଣେ ମନ୍ତ୍ରୀ ହୋଇପାରିଛି- ତା'ରି କାହାଣୀ।

ସେଇ କଥା ଶୁଣୁ ଶୁଣୁ ହଠାତ୍ ମୋର ମନେ ପଡ଼ିଗଲା ସୁରଂଜନ କଥା। ଏଇ ବଙ୍ଗ ମାଟିରେ ଚା' ଦୋକାନରୁ ତାର ଜୀବନ ଆରମ୍ଭ। ସୁରଂଜନ ସହ ବନ୍ଧୁତା ହୁଏ; ମୁଁ ପ୍ରଥମେ ଯେତେବେଳେ ଇଞ୍ଜିନିଅରିଂ ପଢ଼ିବାକୁ ଆସେ ଯାଦବପୁର। ସେ ଏକ ହଠାତ୍ ଦେଖା ଷ୍ଟେସନରେ- ପରିଚୟ ମଧ। ମୁଁ ଗୋଟେ ବଡ଼ ବାକ୍ସ, ସୁଟକେସ, ବେଡ଼ିଂ ଇତ୍ୟାଦି ନେଇ ପ୍ରଥମଥର ହଷ୍ଟେଲ ଜୀବନ ଆରମ୍ଭ କରିବାକୁ ଆସିଛି। ଟ୍ରେନ ଚାରି ଘଣ୍ଟା ଡେରି, ରାତିଟାରେ ଯିବି କୁଆଡ଼େ। ଟ୍ରେନ୍‌ରୁ ଓହ୍ଲାଇ ଯାତ୍ରୀନିବାସକୁ କୁଲି ହାତରେ ଜିନିଷ ବୁହାଇ ଆଣି ଦେଖିଲାବେଳକୁ 'ରୁମ୍ ନାହିଁ'। କଣ କରିବି, ଏଇ ହାଓଡ଼ା କୁଲିକୁ ଟ୍ୟାକ୍ସି କଥା କହିବାବେଳକୁ ସେ ପାଟି କରିଉଠିଲା। ଟ୍ୟାକ୍ସିରେ ଉଠାଇବାକୁ ଆଉ ଦଶ ଟଙ୍କା ପଡ଼ିବ। ତା' ସହ ବଚସା ଆରମ୍ଭ ହେବା ବେଳକୁ, ସୁରଂଜନ ପୂରା ଅଜଣା ଅଶୁଣା ଲୋକ,

ପାଖକୁ ଆସି ପଚାରିଲା, ''କଣ ହୋଇଛି ?'' ହଠାତ୍ ପଦେ ଓଡ଼ିଆ କଥା ଶୁଣି ମୁଁ ଆଶ୍ୱସ୍ତ ହେଲି। ସେ ତା'ପରେ ମୋତେ ଆଉ କିଛି ଭାବିବାକୁ ନ ଦେଇ କୁଲି ଧନ୍ଦା ଛିଡ଼ାଇ ଦେଇ କହିଲା- ''ଆସନ୍ତୁ, ରାତିରେ ଆମ ମେସ୍‌ରେ ରହିଯାଆନ୍ତୁ, କାଲି ଅନ୍ୟ ବ୍ୟବସ୍ଥା କରିବା।'' ମୁଁ ଏପରି ମୁଗ୍ଧ ହୋଇ ଯାଇଥିଲି ଯେ କଲିକତାପରି ଜାଗାରେ ଏମିତି ଜଣେ ଅଜଣା ଲୋକ ସହ କୁଆଡ଼େ ଯିବାକୁ ଆପତ୍ତି କରି ନ ଥିଲି।

ସେ ନିଜର ପରିଚୟ ଦେବାକୁ ଯାଇ କହିଲା ତାର ନାମ, ସୁରଂଜନ ପାଠୀ, ଏଠି ପ୍ରେସିଡେନ୍ସିରେ ବି.ଏସ୍‌ସି. ପଢୁଛି ବାସ୍ ଏତିକି। ଟ୍ୟାକ୍ସିରେ ଯିବାର ତାର ନ ଥିଲା- ବସ୍ ବା ଟ୍ରାମରେ ଯାଇଥାଆନ୍ତା। ମୋ ପାଇଁ ଟ୍ୟାକ୍ସି ଡାକିବାର ଅନୁମତି ନେଇ ସେ ଟ୍ୟାକ୍ସିରେ ଜିନିଷ ଭର୍ତ୍ତି କରି ପଛ ସିଟ୍‌ରେ ବସି ମୋତେ ଡାକିଲା- ''ଆସ ଡେରି କାହିଁକି ?'' ତାର ହଠାତ୍ 'ଆସ' ବୋଲି ସମ୍ବୋଧନରୁ ମୋତେ ଜଣାପଡ଼ିଲା ଯେପରି ଆମେ ପୂର୍ବ ପରିଚିତ; ଖାଲି ପୂର୍ବ ପରିଚିତ ନୁହେଁ ବନ୍ଧୁ ପରିଚିତ। ଗାଡ଼ି କିଛି ବାଟ ଆଗେଇଯିବା ପରେ ମୁଁ ତା' ହାତକୁ ଧରି ପକାଇ କହିଥିଲି- 'ତମେ ଆଜି ନ ଥିଲେ ବଡ଼ ଅସୁବିଧାରେ ପଡ଼ିଥାନ୍ତି, ଏତେ ଗୁଡ଼ାଏ ଲଗେଜ ନେଇ।' ସେ ଦୁଇ ହାତରେ ମୋ ହାତକୁ ଜୋର୍‌ରେ ଧରି ରଖି କହିଲା- ''ବିଦେଶରେ ଆମେ ପରସ୍ପରକୁ ସାହାଯ୍ୟ କରିବା ନାହିଁ ତ କରିବ କିଏ ?'' ବାସ୍ ସେଇ ତା ମୁଠା ଭିତର ଦେଇ ଆମ ଅନ୍ତରର ଢେଉ ବୋଧହୁଏ ଉଦ୍‌ବେଳିତ ହୋଇ ମିଶିଯାଇ ଏକ ସମାନ ସ୍ତରକୁ ଆସିଗଲା ଆଉ ଆମେ ହୋଇଗଲୁ ବନ୍ଧୁ।

ମୋରି କଲିକତା ରହଣି ଚାରି ବର୍ଷ, ମୁଁ କୌଣସି ପ୍ରକାର ଅଭାବ ଅନୁଭବ କରି ନାହିଁ। ପ୍ରାୟ ପ୍ରତ୍ୟେକ ରବିବାର ଆମର ଦେଖା ହୁଏ- କେବେ ସେ ଆସେ ବା ମୁଁ ଯାଏ। ତାର ଏମ୍.ଏସ୍‌ସି. ସରିବା ବେଳକୁ ମୋର ଇଂଜିନିଅରିଂ ଶେଷ ବର୍ଷ। ଏଇ ବର୍ଷଗୁଡ଼ିକ ଭିତରେ ଆମର ଏପରି କିଛି ଗୁପ୍ତ କଥା ନାହିଁ ଯେ ପରସ୍ପର ପାଖରେ ଅଜଣା। କଥାରେ ଅଛି ଅଭାବ ନ ଥିବା ଘରର କଥାରେ କିଛି ନୂତନତ୍ୱ ନ ଥାଏ। ମୋର ପରିବାର ବିଷୟ କହିବା ପୂର୍ବରୁ ବୋଧହୁଏ ସେ ଅନୁମାନ କରି ନେଇଥିଲା। ଆମ୍ଭମାନଙ୍କ ଘରର ଜୀବନ ଓ ଚାଲିଚଳଣି ସବୁ ପ୍ରାୟ ଏକାପରି, ଖାଲି ପରିବାରର ଲୋକ ସଂଖ୍ୟାର ତଫାତ୍। ତଥାପି ଘରର ମଣିଷ ଓ ପୋଷା କୁକୁରଠୁ ଆରମ୍ଭ କରି ଗଛପତ୍ର ବଗିଚା ଗାଡ଼ି ସବୁ କଥା କହିବାକୁ ସପ୍ତାହେ ଲାଗି ନ ଥିଲା। ତା ସାଙ୍ଗକୁ ମୋ ସହରରେ ଛାଡ଼ି ଆସିଥିବା, ପ୍ରତି ସପ୍ତାହରେ ନାଲି ସବୁଜ ଲେଟର-ପ୍ୟାଡ୍‌ରେ ଚିଠି ଲେଖୁଥିବା 'ବନାନୀ' କଥା କହିବାକୁ ମାସଟେ ମଧ ଲାଗି ନ ଥିଲା ମୋତେ। ତା' ପ୍ରତିବଦଳରେ ମୁଁ ତା କଥା ଶୁଣି ଶୁଣି, ତିନି ବର୍ଷ ପରେ ମଧ ପଚାରୁଥିଲି, ଆହୁରି କିଛି ଯେପରି ବାକି ରହି ଯାଇଥିଲା।

ସେ ପିଲାଟି ଦିନରୁ ବାପା ମାଙ୍କୁ ହରାଇଥିଲା, ବ୍ରାହ୍ମଣୀ କୂଳରେ; କେଉଁ ଏକ ପ୍ରତି ବର୍ଷ ବନ୍ୟାରେ ପ୍ଲାବିତ ଗାଁ ମୁଣ୍ଡରେ। ସେଇଠୁ ଦୂର ସମ୍ପର୍କ କକେଇଙ୍କ ସହ କଲିକତା ଆସେ ପାଠ ପଢ଼ିବା ନାଁରେ। କିନ୍ତୁ କକେଇଙ୍କ ଘରେ ଭାତ ମୁଠାକପାଇଁ ଚାକର କାମ ତା ସହ ସାମାନ୍ୟ ଭୁଲପାଇଁ ଦଣ୍ଡ। ସେଇ ଅସହ୍ୟ ଜୀବନରୁ ମୁକ୍ତି ପାଇବାପାଇଁ, ସେ ଘର ଛାଡ଼ି ଚାଲିଯାଏ କଲିକତା ବାହାରକୁ। ଏଇ ଚିନ୍‌ସୁରା- ଗଙ୍ଗା ନଦୀକୂଳରେ ଯେ ସେ କିପରି ଆସି ପହଞ୍ଚିଲା ଚିନ୍ତା କରିପାରେ ନାହିଁ। ଭାଗ୍ୟକୁ ରବିବାର, ଗଙ୍ଗାକୂଳ ବୁଲି ଆସିଥିବା ଓଡ଼ିଆ ପରିବାର ତାକୁ ଆବିଷ୍କାର କରନ୍ତି ସେଇଠି, ଆଉ ଉଭୟ ପକ୍ଷଙ୍କୁ ସୁହାଇଲା ଭଳି ବ୍ୟବସ୍ଥା ହୋଇଯାଏ ଘଣ୍ଟାକ ଭିତରେ। ସାହୁ ବାବୁଙ୍କ ଜଳଖିଆ ଦୋକାନ ଅଛି ପୁରୁଣା କଲେଜ ଛକରେ, ଆଉ ଗୋଟେ ପିଲା ତାଙ୍କର ନିହାତି ଜରୁରୀ ଦରକାର। ଏଣେ ସୁରର ଦି'ଓଳି ଖାଇବା ଆଉ ମୁଣ୍ଡ ଘୋଡ଼ାଇବାପାଇଁ ଚାଳଟିଏ ମଧ ନିହାତି ନ ହେଲେ ନ ଚଳେ। ବାସ୍, ଖାଇ ପିଇ ଦୋକାନ ବାରଣ୍ଡାରେ ଶୋଇ ଦଶ ଟଙ୍କା ଦରମାରେ ରହିଲା ସୁରଂଜନ। କିଛି ନ ହେଲେ ଯାଉଣୁ ଆସୁଣୁ ମାଡ଼ପିଟ୍ ତ ନାହିଁ।

ରାତି ଦଶଟା ସୁଦ୍ଧା ଜଳଖିଆ ଦୋକାନ ତାଲା ପକାଇ ସାହୁ ବାବୁ ଗଲା ପରେ ସୁର ବାହାର କରେ ତାର ବହି ବସ୍ତାନି ଭିତରୁ ଭଙ୍ଗା ସିଲଟ। ଧୀରେ ଧୀରେ ପ୍ରାଥମିକ ସରିଗଲା ବେଳକୁ ଯୁବ ପରିଷଦର ଶଙ୍କରଦା'ଙ୍କ ସହ ପରିଚୟ, ସୁରକୁ ନେଇ ପହଞ୍ଚାଇ ଦିଏ ଚିନସୁରା ଓଡ଼ିଆ ଆସୋସିଏସନର କର୍ମକର୍ତ୍ତା ପରିଡ଼ା ବାବୁଙ୍କ ପାଖରେ। କଣବା ସେ କରିପାରିବେ? ତେବେ ତାଙ୍କ ପୁଅର ପୁରୁଣା ବହି ଖାତା ସବୁ ସେ ଦେବାକୁ ଆରମ୍ଭ କଲେ ବର୍ଷ ପରେ ବର୍ଷ। ସୁରର ଦରମା ବଢ଼ି ତିରିଶ ଟଙ୍କା ହେଲା ବେଳକୁ ସେ ହିସାବ କିତାବ ରଖିବା ଆରମ୍ଭ କରି ଦେଇଥିଲା।

ଦିନେ ସାହୁ ବାବୁଙ୍କୁ ଚମକାଇ ଦେଇ ପରିଡ଼ା ବାବୁ ଆସି ଠିଆହେଲେ ହାତରେ ମିଠାଧରି; କଣ ନା ସୁର ମାଟ୍ରିକ ପାସ କରିଛି ଫାଷ୍ଟ ଡିଭିଜନରେ। ସାହୁ ବାବୁଙ୍କ ମୁଣ୍ଡରେ ଚଡ଼କ ପଡ଼ିଲା- "ଏମିତି କିମିତି ହେଲା।" ତାଙ୍କ ପଛରୁ ଛୁରୀ ମାରିବା ସୁରର ଠିକ୍ ହୋଇ ନାହିଁ କି ଓଡ଼ିଆ ଆସୋସିଏସନର ମଧ ଏପରି କରିବା ଉଚିତ ହୋଇ ନାହିଁ ବୋଲି ସେ ଯେତେ କହିଲେ ବି ଶୁଣୁଛି କିଏ ଆସୋସିଏସନର ଅନ୍ୟାନ୍ୟ ସଭ୍ୟ, ଯୁବ ପରିଷଦର ପିଲାଏ, ସୁରର ଏପରି ଏକ କୃତିତ୍ୱ ନେଇ ହା ହୁଲ୍ଲୋଳ ଆରମ୍ଭ କରିଦେଲେ।

ତା'ପରେ ଟ୍ୟୁସନ ମିଳିବାରେ ଅସୁବିଧା ହେଲାନି। ଚିନସୁରା ଓଡ଼ିଆମାନଙ୍କ ପିଲାଙ୍କ ପଢ଼ାପଢ଼ି, ବିଶେଷ କରି ଦି'ଜଣ ଓଡ଼ିଆ ବ୍ୟାଙ୍କ ଅଫିସରଙ୍କ ପିଲାଙ୍କ ପଢ଼ିବାପାଇଁ ଓଡ଼ିଆ ଶିକ୍ଷକଙ୍କ ଅଭାବ ହଠାତ୍ ପୂରଣ କରିଦେଲା ସୁର। ରହିବାପାଇଁ ଆସୋସିଏସନର ପୁରୁଣା

ଭାଙ୍ଗି ପଡୁଥିବା ଘରର ଗୋଟେ ଛୋଟ ରୁମ୍ ମଧ୍ୟ ମିଳିଗଲା । ସେଇଠି ରହି ଆଇ.ଏସ୍‌ସି. ପାସ କଲା ସୁର ଫାଷ୍ଟ ଡିଭିଜନରେ; ପ୍ରଥମ ଦଶ ଜଣରେ ଥିଲା ସେ । ତା'ପରେ ବି.ଏସ୍‌ସି. ପଢ଼ିବାବେଳକୁ ସେ ପଢ଼ିଲା ପ୍ରେସିଡେନ୍ସିରେ, ଆଉ ରହିଲା କଲିକତାରେ ଗୋଟେ ମେସରେ । ଟ୍ୟୁସନର ଅଭାବ ରହିଲା ନାହିଁ, ତା ସାଙ୍ଗକୁ ଗାଁରେ ଯାହା ପାଞ୍ଚ କିଆରି ଜମିଥିଲା, ତାକୁ ବିକ୍ରିକରି ଟଙ୍କାଟା ସେ ଫିକ୍ସଡ଼୍ ଡିପୋଜିଟ୍ ରଖି ଦେଇଥିଲା । ସେ ଏମ୍.ଏସ୍‌ସି. ପାସ କଲାବେଳକୁ ମୁଁ ଇଞ୍ଜିନିଅରିଂ ପାସ କରି ଆର.ଡି. ବିଲଡର୍ସରେ ଟ୍ରେନିଂ ନେଉଥାଏ । ଏମ୍.ଏସ୍‌ସି.ରେ ଫାଷ୍ଟ କ୍ଲାସ ସେକେଣ୍ଡ ହୋଇଥାଏ ବୋଲି ଓଡ଼ିଆ ଆସୋସିଏସନର ସମସ୍ତଙ୍କ ମନଦୁଃଖ । ଓଡ଼ିଆ ପିଲାବୋଲି ଫାଷ୍ଟ କ୍ଲାସ ଫାଷ୍ଟ ହୋଇ ପାରିଲା ନାହିଁ ।

ତା'ପରେ ଯେଉଁଦିନ ୱେଷ୍ଟବେଙ୍ଗଲ ଏଜୁକେସନ ସର୍ଭିସରେ ପଶି ଚାକିରିରେ ଯୋଗଦେଲା ତା' କିଛି ଦିନ ଭିତରେ ମୁଁ ମଧ୍ୟ ଚାକିରି ପାଇ ଓଡ଼ିଶା ଫେରି ଆସିଥିଲି ।

ବର୍ତ୍ତମାନ ଏଇ ଜାମ ଭିତରେ ବସି ଯେଉଁ ମଜା କଥାଟା ମନେ ପଡୁଥିଲା ତାକୁ ରୋମନ୍ଥନ କରିବାକୁ ଯାଇ ଏତେ ସବୁ କହିଗଲି ପୂର୍ବାପର ସମ୍ବନ୍ଧ । ସେଦିନ ଏମିତ ଗୋଟେ ଜାମରେ ପଡ଼ିଥିଲୁ ଚିନସୁରାରୁ ଫେରିବା ରାସ୍ତାରେ । ସୁର ଚାକିରି ଆରମ୍ଭରେ ରହିଲା ସିଆଡ଼େ କୁଆଡ଼େ ପୁରୁଲିଆ, ବାଙ୍କୁଡ଼ା ଆଡ଼େ । ତା'ପରେ ତାର ପ୍ରଥମ କଲିକତା ସହରକୁ ପୋଷ୍ଟିଂ ବେଳକୁ ଆମକୁ ଗୋଟେ ସୁଯୋଗ ମିଳିଗଲା କଲିକତା ବୁଲି ଆସିବାକୁ । ସୁରର ଆସିବା ମାସେ ହୋଇ ନାଇଁ । ଘରଟିଏ ଯୋଗାଡ଼ କରିବା ହେଇ ଯାଇଥିଲା ସେଇ ଚିନସୁରା ଶୁଭାକାଙ୍କ୍ଷୀମାନଙ୍କ ଦୟାରୁ । ବାହାଘରର ଛ'ମାସ ହୋଇଥାଏ ଆମର । ଯାଇ ପହଞ୍ଚିଗଲୁ ସୁର ବସାଘରେ । ବସାଘର, ତିନିତାଲା ଉପରେ । ଭିତରକୁ ପଶିବା ବେଳକୁ ମୋ ସ୍ତ୍ରୀ ବ୍ୟସ୍ତ ହୋଇପଡ଼ିଲା । ଚୁପ କରି ମୋତେ ପଚାରିଲା- ''ଏଇ ଘରଟା ଭାଙ୍ଗି ପଡ଼ିବ ନାହିଁ ତ ?'' ଏଡ଼େବଡ଼ କୋଠା ଭିତରକୁ ଏପଟ ବାରଣ୍ଡା, ସେପଟ ଗଳି ଦେଇ ଆମେ ତିନିତାଲା ଉପରେ ଯାଇ ପହଞ୍ଚିଲୁ । ଦୁଇଟି ଛୋଟ ଛୋଟ ରୁମ୍ ସହ ଜାଲି ଦିଆ ବାରଣ୍ଡାରେ ରୋଷାଇ ଓ ଛ'ଟା ପାହାଚ ତଳେ ଗାଧୁଆ ଘର ଓ ପାଇଖାନା । ସବୁର ପରିଷ୍କାର ପରିଚ୍ଛନ୍ନତା ଦେଖି ମୋ ସ୍ତ୍ରୀ ଆଶ୍ୱସ୍ତ ହେଲା । ଦୁଇ ଦିନ ବୁଲାବୁଲି ପରେ ସୁର ବାହାରିଲା ଗୋଟେ ଗାଡ଼ି କରି ଚିନ୍‌ସୁରା । ଭାବିଲି ସୁରର ବାଲ୍ୟ ଜୀବନର ଯେଉଁ ପୃଷ୍ଠଭୂମି ତାକୁ ନ ଦେଖିଲେ ସତରେ ଆମ ପରିଚୟ ବା ବନ୍ଧୁତ୍ୱର ପୂର୍ଣ୍ଣତା ନାହିଁ । ପଢ଼ା ଜୀବନରେ ଏ କଥା ଜମା ମୁଣ୍ଡରେ ପଶି ନ ଥିଲା । ଗାଡ଼ିରେ ମୁଁ ଓ ମୋ ନବବିବାହିତା ସ୍ତ୍ରୀ ସୁନନ୍ଦା ଆଉ ସୁର ଓ ତା ସ୍ତ୍ରୀ ମନୀବଉଦୀ । ସୁର ଏଇ ଚିନସୁରା ପାଖ ବଣ୍ଡେଲରେ ବାହାହେଲା ପରିଡ଼ା ବାବୁଙ୍କ ପରିଚିତ ମହେନ୍ଦ୍ର ମିଶ୍ରଙ୍କ ଝିଅକୁ । ମହେନ୍ଦ୍ର ମିଶ୍ର ଗତ ଦୁଇପୁରୁଷ ହେଲା ରହିଗଲେଣି ଏଠି । ତାଙ୍କ ଗୋସବାପ ଆସିଥିଲେ କେଉଁ ଜମିଦାରଙ୍କ ସହ ଯାଜପୁର ପାଖ ମନ୍ଦରପୁରରୁ ।

ଆଜି କିନ୍ତୁ ମନୀବଉଦୀ ଯେତେ କହିଲେ ବି ସୁର ମନା କଲା, 'ବଣ୍ଡେଲ ନ ଯାଇ ଯିବା ଚିନସୁରା ସେଇ ସାହୁ ବାବୁ ହୋଟେଲକୁ।' ସାହୁ ବାବୁ ହୋଟେଲ ଆଗରେ ଗାଡ଼ି ରହିଲା। ଆମକୁ ବସିବାକୁ କହି ଭିତରକୁ ଯାଇ ସେ ବହୁତ ବେଗିରେ ବାହାରିଲା, ହାତରେ ଗୋଟେ ଭଙ୍ଗା ପୁରୁଣା କାଠ ଟୁଲ। ବାହାଘର ପରେ ଗୋଟିଏ ପରେ ଗୋଟେ ଘରର ଦରକାରୀ ଜିନିଷ କିଣା ହୋଇଛି। ମନୀବଉଦୀର ଘରକରଣାକୁ ସାବାସ ଦେବା କଥା। ଦରମା ପଇସାରେ ଘର ଚଳାଇ ପ୍ରତି ଦୁଇ ତିନି ମାସରେ ଘରପାଇଁ ଦରକାରୀ କିଛି ନା କିଛି କିଣା ହୋଇଛି। ସୁରର କିନ୍ତୁ ଗୋଟେ ବଡ଼ ଆଶା ରହିଯାଇଥିଲା। ସେଇଟା ଆଜି ପୂରଣ ହୋଇଯାଇଛି। ଏଣୁ ସାହୁ ବାବୁ ଦ୍ୱାରେ ଗାଡ଼ି ଅଧଘଣ୍ଟାଏରୁ ବେଶୀ ରହିଗଲା। ଏଣେ ରାସ୍ତାରେ ବେଶୀ ଜାମ ଭିତରେ ଆମେ ସବୁ ଗରମରେ ବ୍ୟସ୍ତ ହେଲେ ବି ସୁର ଭାରି ଖୁସିଥିଲା ଆଉ ଗୁଣୁ ଗୁଣୁ ହୋଇ ଗୀତ ଗାଉଥିଲା।

ସୁନନ୍ଦା ଠିକ୍ ବୁଝି ପାରୁ ନ ଥିଲେ କଣପାଇଁ ଆମେ ଏମିତି ବ୍ୟସ୍ତ ହୋଇ ଚିନସୁରା ଗଲୁ, ମନୀବଉଦୀ ବାପଘରକୁ ନ ଯାଇ। ଅବଶ୍ୟ ସାହୁ ବାବୁ ହୋଟେଲ ଆଉ ଓଡ଼ିଆ ଆସୋସିଏସନର ସେଇ ବାରଣ୍ଡା ଶେଷ ରୁମ୍ ଦେଖି ଆସିଲୁ, ଯେଉଁଠି ରହି ସୁରର ଜୀବନର ପନ୍ଥ ପରିବର୍ତ୍ତନ ହୋଇଥିଲା। ମନୀବଉଦୀ ଆଖିର ଲୁହ ବୋହି ନ ଆସିଲେ ବି ମୁଁ ଅନୁଭବ କରୁଥିଲି ତାଙ୍କ ଅନ୍ତରର କୋହ। ସ୍ୱାମୀ ତାର କି ଅବସ୍ଥାରୁ ଆସି ଆଜି ମଣିଷ ହୋଇଛି ନିଜ ଆଖିରେ ଦେଖି ସତରେ ସେ ବାକ୍‌ରୁଦ୍ଧା ହୋଇଯାଇଥିଲେ।

ଘରେ ଖାଇ ପିଇ ଶୋଇବାକୁ ଗଲାବେଳକୁ ମୁଁ ସୁନନ୍ଦାକୁ ବୁଝାଇ କହିଲି- ''ସେଇ ଯେଉଁ କାଠର ପୁରୁଣା ଟୁଲଟାକୁ ସେଇ ଦୋକାନରୁ ସୁର ଆଣିଲା ସେଇଟାକୁ କେମିତି କୁଣ୍ଡାଇ ଧରିଥିଲା ଦେଖିଲ କି ନାହିଁ?'' ସେ ମୋ ଆଡ଼କୁ ପ୍ରଶ୍ନବାଚୀସହ ଚାହିଁ ରହିଲା। ମୁଁ କହିଲି ସୁର ଏଇ ହୋଟେଲରେ ଯେତେବେଳେ ପ୍ରଥମେ ଚା' କରିବାରେ ସାହାଯ୍ୟ କରୁଥିଲା ତାର କାମ ଥିଲା ବସି ଆଞ୍ଚ ଲଗାଇବ ଓ ଆଞ୍ଚରେ ପଙ୍ଖା କରୁଥିବ। ସେଇଠି ତଳେ ବସି ସେ କାମ କରିବାକୁ ସୁବିଧା ହେଲା ନାହିଁ ବୋଲି ସେ ହୋଟେଲ ଚେୟାରଟାଏ ଟାଣିନେଇ ବସିଲାରୁ ସାହୁ ବାବୁ ପାଖରୁ ଚାପଡ଼ ଖାଇଥିଲା। ତା'ପରେ, ଦରମା ପଇସାରୁ ସଞ୍ଚୟକରି ଦୁଇ ମାସରେ ସୁର ନିଜ ପଇସାରୁ ଏଇ ଟୁଲଟା କିଣିଥିଲା, ଆଉ ସାହୁ ବାବୁର ଚାହି ଚାପରା ଗାଳି ସତ୍ତ୍ୱେ ସେଇଟାକୁ ଏଠି ଥିବା ପର୍ଯ୍ୟନ୍ତ ଯତ୍ନରେ ରଖିଥିଲା। ତା'ପରେ ସେଇ ବଡ଼ ଦୋକାନ ବାରନ୍ଦାରେ ରାତିରେ ପଡୁଥିଲା ଏଇ ଟୁଲରେ ବସି। କିନ୍ତୁ ପରେ ଯେତେବେଳେ ସେ ହୋଟେଲ ଛାଡ଼ିଲା ସାହୁ ବାବୁ ସେଇ ଟୁଲଟାକୁ ଦେବାକୁ ନାହିଁ କରିଦେଲେ।

ସ୍କୁର ମଟର ସାଇକେଲ, ଫ୍ରିଜ, ଟି.ଭି. ସବୁ ଭିତରେ ମଧ ଗୋଟେ ଅଭାବ ଅନୁଭବ କରୁଥିଲା। ଆଜି ଏତେ ବର୍ଷ ପରେ ତା' ଜୀବନର ନିଜ ରୋଜଗାରରେ ପ୍ରଥମ-କିଣା ଜିନିଷଟି ଫେରି ପାଇଛି ସେ। ଖଟପଲଙ୍କ, ଟି.ଭି., ଫ୍ରିଜ ଇତ୍ୟାଦି ଭିତରେ ଏଇ ଟୁଲ୍‌ଟା ତା' ଜୀବନର ଗୋଟେ 'ଅମୂଲ୍ୟ ଜିନିଷ'- ଏଥିରେ ସନ୍ଦେହ ନାହିଁ। ମୋ ଆଖିରେ ଲୁହ ଆସି ଯାଇଥିଲା, ସୁନନ୍ଦା ଆଖିରେ ବି ଲୁହ ଚକ୍ ଚକ୍ କରୁଥିଲା।



# ଭାଇ

ମୋର ପୋଷ୍ଟିଂ ଅହମ୍ମଦାବାଦକୁ ମୋ ଭଉଣୀ ମାମିନା ସୁରଟରେ। ଚାକିରି ଜୀବନରେ ଏମିତି ଏତେ ପାଖରେ ପ୍ରଥମଥରପାଇଁ ରହିଲୁ ଦଶ ବର୍ଷ ଭିତରେ- ମୋର ଦଶ ବର୍ଷ ତାଙ୍କର ଆଠ ବର୍ଷ। ଏ ଆଠ ବର୍ଷ ସାରା ରଘୁ ଭାଇ (ମାମିନା ମୋଠୁ ସାନ ହେଲେ ବି ମୁଁ ତା' ସ୍ୱାମୀକୁ ଭାଇ ଡାକେ, କାରଣ ସେ ମୋଠୁ ଗୋଟେ ବର୍ଷ ବଡ଼) ପ୍ରାୟ ମାଡ୍ରାସ ବାଙ୍ଗାଲୋର ଏରିଆରେ କଟାଇଲାବେଳକୁ ମୁଁ ଗୌହାଟୀ କଲିକତାରେ କଟାଇ ନେଇଥିଲି। ଏତେଦିନ ଧରି ବାପା ମା'ଙ୍କୁ ଦେଖିବାପାଇଁ ଯିବାଟା ଆମେ ଚେଷ୍ଟା କରି ମଧ ଏକ ସମୟରେ କରିପାରୁ ନ ଥିଲୁ। ମୋର ପୂଜାରେ ଟିକେ ଅଧିକ ଛୁଟିବୋଲି ସେତିକିବେଳେ ମୁଁ ଘରକୁ ଆସିବାବେଳକୁ ତାଙ୍କର ମାତ୍ର ଗୋଟେ ଦିନ ଛୁଟିବୋଲି ଆସି ପାରନ୍ତି ନାହିଁ। ଏ ଆଠ ବର୍ଷ ଭିତରେ ମାତ୍ର ଦୁଇ ଥର ଆମେ ସାଙ୍ଗ ହୋଇ ରହିଥିଲୁ ଭୁବନେଶ୍ୱରରେ। ପ୍ରଥମଥର ଯେତେବେଳେ ମାମିନା ଓ ରଘୁ ଭାଇ ଆସିଥିଲେ ଜୋଇଁ ଡାକରାରେ- ବାହାଘର ତିନି ମାସ ପରେ ତାଙ୍କୁ ଛୁଟି ମିଳିଥିଲା। ତା'ପରେ ଯେତେବେଳେ ଆମ ଦୁଇ ଜଣଙ୍କପାଇଁ ମା' ଗାଁରୁ ଯାଇ ଆଣିଥିଲା ବଇଁଶୀ ଆଉ ସୁନେଇ ଭାଇ ଭଉଣୀ ଦୁଇ ଜଣଙ୍କୁ, ଆମମାନଙ୍କ ଘରେ କାମ କରିବାପାଇଁ।

ମୋ ମା ଯେତେବେଳେ ବାହା ହୋଇ ଆସିଥିଲା ତା' ସହ ଆସିଥିଲା ପୋଇଲି-ମା 'କୁମାରୀ' ଆଉ ତା' ସ୍ୱାମୀ 'ଦୋଳ'। ଦୋଳ ହେଲା ଆମ ଘରର ମୁଖ୍ୟ ହଳିଆ ଆଉ କୁମାରୀ ହେଲା 'ଧାଇମା'। ତାଙ୍କ ପିଲାମାନେ ଗୋଟିକ ପରେ ଗୋଟେ ଆମରି ଘରେ କାମ କରନ୍ତି ଆଉ ବାହାହୋଇ ସଂସାର କରନ୍ତି। ଏମିତି ସମସ୍ତଙ୍କ କାମସାରି

ଦେଇ ଆମରି ଘର ଜଗି ପଡ଼ି ରହିଥିଲେ ବୁଢ଼ାବୁଢ଼ୀ। ଏବେ ତାଙ୍କରି ନାତିନାତୁଣୀ ସବୁଙ୍କୁ ଆମ ଘରମାନଙ୍କର କାମପାଇଁ ରପ୍ତାନୀ ଆରମ୍ଭ କରି ଦେଇଥିଲା ମା। ଦୋଳଗ ବଡ଼ ଝିଅର ସାତଟା ପିଲା- ଜୋଇଁଟା ଶ୍ୱାସ ବେମାରୀ। ଅଧା ଦିନ କାମକୁ ଯାଇପାରେନି। ଚଳିବା କଷ୍ଟ। ସେଇଥିପାଇଁ ବଡ଼ ପିଲା ଦୁଇଟାକୁ ବାହାରକୁ ପଠାଇବାକୁ ରାଜି ହେଲେ ସେମାନେ। ତା'ପରେ ସେମାନେ ଜାଣିଥିଲେ ପିଲା ଦୁଇଟାକୁ ମଣିଷ କରିବାର ଦାୟିତ୍ୱ ଆମ ମୁଣ୍ଡ ଉପରେ ରହିଲା।

ଆମ ବି'ଘରପାଇଁ ଚାକର ପିଲା ଯୋଗାଡ଼ ହୋଇ ଯାଇଚି ଖବର ପାଇ ଆମେ ସବୁ ଧାଇଁଗଲୁ ଭୁବନେଶ୍ୱର। ଏମିତି ଏକ ସୁବିଧା ଛାଡ଼େ କିଏ। ବାବା ଥଟ୍ଟା କରୁ କରୁ କହିଲେ, ''କିହୋ ସରକାରୀ ଚାକରମାନେ, ଏତେବେଳକୁ ତ କଣ ଛୁଟି ମିଳିଗଲା ଦୁଇ ଜଣଙ୍କୁ ଏକା ସାଙ୍ଗରେ ? ଆଉ ବୁଢ଼ା ବାପ ମା'ଙ୍କୁ ଦେଖିବାକୁ ଆସିଲାବେଳେ ଏକାବେଳକୁ ଛୁଟି ମିଳିପାରେ ନାଇଁ।'' ଆମ ମୁହଁ ସବୁ ଚୁପ୍। ଗୋଟେ ଗୋଟେ ପିଲା ଜନ୍ମ ହେବା ପରେ, ସ୍ତ୍ରୀ ମାନଙ୍କପାଇଁ ଘର ସାଙ୍ଗକୁ ଛୁଆ କାମ ଯେଉଁ ଅସୁବିଧା, ସେ ମୁଣ୍ଡବ୍ୟଥା କଥା କହିବାକୁ ଲାଜ। ଯାହାହେଉ ମାମିନା ସୁନେଇକୁ ଆଉ ମୁଁ ବଇଁଶୀକୁ ଧରି ଆସିଥିଲୁ, ସେଇ ତିନି ବର୍ଷ ତଳେ। ଯା ଭିତରେ ଆମେ ଭାଇ ଭଉଣୀ ଖାଲି ଭୁବନେଶ୍ୱର କାହିଁକି ଗାଁକୁ ମଧ୍ୟ ଯାଇଚୁ ବାଧ୍ୟ ହୋଇ। କିନ୍ତୁ ଏକା ସାଙ୍ଗେ ନୁହେଁ ଅଲଗା ଅଲଗା। ଆମେ ବଇଁଶୀକୁ ଆଣିବାର ପ୍ରଥମ ବର୍ଷ ଗଲୁ। ସେ ନୂଆ ହୋଇ ଗାଁ ଛାଡ଼ିଚି କାଳେ ଇଚ୍ଛା ଥିବ। ଏଣୁ ଆମେ ଭୁବନେଶ୍ୱର ଆସିଥିବାବେଳେ ଗାଁକୁ ବି ବାହାରିଲୁ। ଗାଁରେ ବଡ଼ମା ଆମକୁ ଲାଜରେ ପକେଇ କହିଲେ- ''ହଁରେ ପୁଅ, ଏମିତ ତ ତମର ଦେଖା ନାହିଁ; ଯାହାହେଉ ବଇଁଶୀକୁ ବୁଲାଇବାକୁ ଆଣି ତମ ପାଦ ପଡ଼ିଲା ଗାଁ ମାଟିରେ।'' ସତ କଥା ବଇଁଶୀକୁ ଗାଁକୁ ଥରେ ବୁଲିବାକୁ ପଠାଇଦେଲେ, କାଳେ ପୁଣି ନ ଆସିବ ସେଇଥିପାଇଁ ସମସ୍ତେ ଗାଁକୁ ବୁଲିଯିବା କଥା। ସାଙ୍ଗରେ ନେଲୁ ସାଙ୍ଗରେ ଆଣିଲୁ। ସେମିତି ରଘୁ ଭାଇ ଓ ମାମିନା ମଧ୍ୟ ଗାଁରୁ ସୁନେଇକୁ ନେଇ ବୁଲି ଆସିଚନ୍ତି।

ହେଲେ ଆମେ ସିନା ଭୁବନେଶ୍ୱର ଯାଇଚୁ ପୂଜା କି ଗ୍ରୀଷ୍ମ ଛୁଟିରେ; ଆଉ କାଳେ ବଇଁଶୀ ପଳାଇବ ଗାଁକୁ ଓ ଫେରି ନ ଆସିବ ଭାବି ଗାଁରୁ ନେଇ ବୁଲାଇ ଆଣିଚୁ, କିନ୍ତୁ ତା' ତରଫରୁ କେବେ ଓଜର ଆପତ୍ତି ନାଇଁ ଯେ ଗାଁକୁ ଯିବି କି ମାକୁ ଦେଖିବି। ମାମିନା ଫୋନ କରେ ସେଇ କଥା। ସେମାନେ ବି ଗାଁକୁ ଯାଇ ଫେରି ଆସିଛନ୍ତି। ହେଲେ ସୁନେଇର ଏମିତି କିଛି ଯିବାକୁ ଇଚ୍ଛା ନ ଥିଲା। ଗାଁକୁ ଗଲା ଯେ ବାପ ମା ସଙ୍ଗେ ଘଣ୍ଟାଟେ ରହିଚିକି ନା ଆମେ ବାହାରିବାବେଳକୁ ବିନା ଦ୍ୱିଧାରେ ଆସି ଗାଡ଼ିରେ ବସି ପଡ଼ିଲା। ବୟସ ଏମିତି କିଛି ବେଶୀ ନୁହେଁ ଯେ ସହରର ଚାକଚକ୍ୟରେ ଭୁଲିଯିବ। ସୁନଇକୁ ଦଶ ଆଉ ବଇଁଶକୁ ଏଗାର କି ବାର। ସେମାନେ ଘର ଛାଡ଼ି

ଆସିଲା ବେଳେ ଆଠ ଆଉ ଦଶ ବର୍ଷର ପିଲା। "ଆଦିବାସୀଗୁଡ଼ା ଏମିତି ବୋଧହୁଏ; ତାଙ୍କର ପୁଣି ଘରକୁ କି ବାପ ମା'କୁ ଟାଣ କଣ? ଯେଉଁଠି ଖାଇ ପିଇ ଆରାମ ପାଇଲେ ରହିଲେ।" କହି ମାମିନା ହସୁଥିଲା, ଆଉ ମୋ ସ୍ତ୍ରୀ ସୁରମା ଯୋଡୁଥିଲେ ତାଙ୍କ ହସ।

ଅହମଦାବାଦରେ ରଘୁ ଭାଇଙ୍କ ଭଉଣୀ ଭିଣୋଇ ମଧ୍ୟ ରହନ୍ତି। ତାଙ୍କ ଭିଣୋଇ ବିଚ୍ଛୁ ଭାଇ ଏଠି ଗୋଟେ ସିରାମିକ୍ସ ପ୍ଲାଣ୍ଟର ଜେନେରାଲ ମ୍ୟାନେଜର। ଆମେ ଆସିବା ବେଳେ ଆମକୁ ବହୁତ ସାହାଯ୍ୟ କରିଛନ୍ତି। ତାଙ୍କର ସହର ସାରା ସମ୍ପର୍କ ଭଲ। ଓଡ଼ିଆ ଆସୋସିଏସନର କର୍ମକର୍ତ୍ତା। ଆମପାଇଁ ଘର, ରୋଷାଇ ଗ୍ୟାସ, ଠିକା ଚାକରାଣୀ ସବୁର ବ୍ୟବସ୍ଥା ସହ ଅନ୍ୟ ଓଡ଼ିଆଙ୍କ ସହ ପରିଚୟ କରାଇ ଆମକୁ ମାସକ ଭିତରେ ସମସ୍ତଙ୍କର ବନ୍ଧୁ କରି ଦେଇଥିଲେ ସେ। ତାଙ୍କର ଗୋଟିଏ ମାଗୁଣି ଥିଲା- "ଆରଥରକୁ ଗାଁକୁ ଗଲେ ତାଙ୍କପାଇଁ ପିଲାଟିଏ ଆଣିଦେବାକୁ।" ଆମେ କଥା ଦେଇଥିଲୁ- "ନିଶ୍ଚେ; ସେଇଟା ମୋ ମା'କୁ ଆଗରୁ କହି ରଖିଛୁ। କିଛି ଅସୁବିଧା ହେବନି; ଆପଣଙ୍କପାଇଁ ପିଲାଟିଏ ନିଶ୍ଚେ ଆସିବ।" ଆମେ ଆସିବାବେଳକୁ ମାମିନା ରଘୁ ଭାଇ ଛ'ମାସ ହେବ ସୁରଟରେ ଅଛନ୍ତି। ସୁବିଧାକରି ପାରି ନ ଥିଲେ ଅହମଦାବାଦ ଆସିବାକୁ। ଆମେ ଆସିବାର ତିନି ମାସ ହେଲାଣି। ଆମେ ବି ବାହାରି ପାରିନୁ।

ଯାହାହେଉ ରଘୁ ଭାଇଙ୍କ କାମ ପଡ଼ିଲା ହଠାତ୍ ଅହମଦାବାଦରେ। ଯେଉଁଦିନ ମାମିନା ରଘୁ ଭାଇ ପହଞ୍ଚିଲେ ଅହମଦାବାଦ; ଷ୍ଟେସନରୁ ସିଧା ଗଲେ ବିଚ୍ଛୁ ଭାଇ ଘରକୁ। ରାତି ୪ଟାରେ ଟ୍ରେନ,- ଡେରିଥିଲା; ସକାଳ ୬ଟାରେ ପହଞ୍ଚି ମାମିନା ଫୋନ କରିଥିଲା। ୬ଟା ବେଳେ ଅହମଦାବାଦରେ ସକାଳ ହୋଇନି। ମୁଁ ନିଦରୁ ଉଠି ଫୋନ ଧରିଲି। କହିଲା- "ଭାଇ ଆମେ ଏଇ ଆସି ପହଞ୍ଚିଲୁ।" ମୁଁ ନିଦ ବାଉଳାରେ ପଦେ ଦି'ପଦ କଥାହେଇ ପଛରେ ଆସିବି କହି, ଘୋଡ଼େଇ ଘାଡ଼େଇ ଶୋଇ ପଡ଼ିଲି।

ସକାଳୁ ଚା' କାହିଁ? ଡେରି ହେଲାଣି ଏତେ! ବଇଁଶୀ ଆସିବା ଦିନୁ ଆମର ଅଭ୍ୟାସ ଖରାପ ହୋଇ ଯାଇଥିଲା। ସାଢ଼େ ସାତଟା ବେଳକୁ ଚା'ଟା ଧରି ବଇଁଶୀ ଆଣି ବିଛଣାରେ ଦେଲେ ଯାଇ ଆମେ ବିଛଣାରୁ ଉଠୁଥିଲୁ। ଆଜି ଚା' ନ ପାଇ ସୁରମା ଗାଧୁଆ ଘରକୁ ପଶି ଯାଉ ଯାଉ ବଇଁଶୀ ବଇଁଶୀ ବୋଲି ଡାକି ଦେଇଗଲେ। ସେଇ ଡାକରେ ମୋର ମଧ୍ୟ ନିଦ ଭାଙ୍ଗିଗଲା। ଆଠଟା ବାଜିବାକୁ ଦଶମିନିଟ। ମୁଁ ରାଗରେ ବଇଁଶୀ ବୋଲି ଜୋର୍‌ରେ ଡାକ ଛାଡ଼ିଲି। ସ୍ୱର ଶବ୍ଦ ନାହିଁ। ସୁରମା ଗାଧୁଆଘରୁ ବାହାରି ରୋଷେଇ ଘର ବୁଲି ଫେରି ଆସିଲେ- "କାହିଁ କୁଆଡ଼େ ଦିଶୁ ନାହିଁ ତ!" ମୁଁ ବିଛଣାରୁ ଉଠି ଥରେ ସବୁଆଡ଼େ ବୁଲି ଆସିଲି, କହିଲି- "ଦେଖ ଦୁଧ ଛିଣ୍ଡି ଯାଇଥିବ ବୋଧେ, ଧାଇଁ ଥିବ ବୁଥ୍‌କୁ।" ସୁରମା ଦାଣ୍ଡଦ୍ୱାର ଖୋଲି କହିଲେ ସକାଳ ଦୁଧ ପେକେଟ

ତ ଏଇଠି ଦ୍ୱାର ତଳେ ଅଛି, ଖବର କାଗଜ ବି ପଡ଼ିଛି। ସେ ତା'ମାନେ ତା' ଆଗରୁ କୁଆଡ଼େ ଯାଇଛି।'' ଆମେ ବ୍ୟସ୍ତ ହୋଇପଡ଼ିଲୁ।

ଫୋନ ବାଜିଲା; 'ମାମିନା।' ସୁରମା ହାତରୁ ମୁଁ ଫୋନ ଟାଣି ନେଇ ବଇଁଶୀ କୁଆଡ଼େ ପଳାଇ ଯାଇଛି; କହିବା ପୂର୍ବରୁ ମାମିନା କହିଲା- ''କାଲି ରାତିରୁ ବଇଁଶୀ ଏଠି ଆସି ସୁନେଇପାଇଁ ଜଗିଛି।'' ମୋ ମୁହଁ ଚୁପ ହୋଇଗଲା। ମୁଁ ମୁହୂର୍ତ୍ତେ ନୀରବ ରହି କହିଲି- ''ଓଃ ଆମେ ତାକୁ ଏଠି ଖୋଜୁଛୁ।'' ଫୋନ ରଖି ଦେଇ ମୁଁ ମନରେ ଏକ ଧକ୍କା ଖାଇବା ପରି ହୋଇ ବିଛଣାରେ ଗଡ଼ି ପଡ଼ିଲି। ସ୍ତ୍ରୀ ମୋର ଭାବାନ୍ତର ଲକ୍ଷ୍ୟ କରି ବ୍ୟସ୍ତ ହେଲେ। ମୁଁ ଭିତରେ ଭିତରେ ନିହାତି ଲଜ୍ଜିତ ହୋଇପଡ଼ିଲି। କହିଲି ''ତିନି ବର୍ଷ ହେଲା ମାମିନା ସହ ଦେଖା ହୋଇ ନାହିଁ।'' ହଠାତ୍ ବିଛଣାରୁ ଉଠିପଡ଼ି ଦାନ୍ତ ଘଷାକୁ ଅପେକ୍ଷା ନ ରଖି ଗାଡ଼ି ଚାବି ଧରିଲି। ସୁରମା ପଚାରିଲେ- 'କୁଆଡ଼େ ?' ମୁଁ କହିଲି- ''ମୁଁ ଟିକେ ରଘୁ ଭାଇ ଘରଆଡ଼ୁ ବୁଲି ଆସେ।''



# କମାର ମା'

ମୋ ସ୍ତ୍ରୀ ନିଜ ଆଖିକୁ ବିଶ୍ୱାସ କରି ପାରିଲେନି। ମୋତେ ଯେତେବେଳେ କଥାଟା କହିଲେ, ମୁଁ ମଧ୍ୟ ବିଶ୍ୱାସ କରିପାରିଲି ନାହିଁ। ଆମେ କଥାଟା ଆଉ ଅନ୍ୟ କାନକୁ ଏପରିକି ବାବାଙ୍କ କାନକୁ ମଧ୍ୟ ନ ନେଇ ଚୁପ୍ ରହିଲୁ। କିନ୍ତୁ ସତରେ ଭୀଷଣ ଆଶ୍ଚର୍ଯ୍ୟ ହେଲୁ ଆମେ।

ବର୍ଷକୁ ଥରେ ଆସୁ ଆମେ ଘରକୁ। ଗୋଟେ ଗୋଟେ ବର୍ଷ ଆଦୌ ଆସି ପାରୁ ନାହିଁ। ତେବେ ଆସିବା ବେଳଟା ଠିକ୍ ନ ଥାଏ। ଭୀଷଣ ଶୀତ ଆମ ଆଦିବାସୀ ରାଜ୍ୟରେ। ମକର ଯଦିଓ ଆମ ଅଞ୍ଚଳର ଗୋଟେ ବଡ଼ପର୍ବ, ଶୀତ ଡରରେ ଆମେ ଆସୁ ନାହିଁ। ଡରଟା ଆମପାଇଁ ନୁହେଁ, ବାପାଙ୍କପାଇଁ। ବାପା ଅଶୀ ଡେଇଁଲେଣି, ଶୀତଦିନ ହେଲେ କାଶ ଆରମ୍ଭ ହୁଏ। ଏଣୁ ବେଶୀ ଶୀତରେ ତାଙ୍କୁ ଗାଁକୁ ନେବା ସମ୍ଭବ ହୁଏ ନାହିଁ। ତା'ପରେ ବଡ଼ପର୍ବ ହେଲା ଦୋଳଯାତ୍ରା, କିନ୍ତୁ ସେତେବେଳକୁ ସରକାରୀ ଚାକିରିଆଙ୍କ ବର୍ଷ ପୂରାଣି। ବାକି ରହିଲା ପୂଜା ଛୁଟି। ହେଲେ ସବୁ ବର୍ଷ ପୂଜାକୁ ଆସିବା ସମ୍ଭବ ହୁଏ ନାଇଁ, କାରଣ ଏଇ ପୂଜା ସମୟରେ ପ୍ରାୟ କୁଆଡ଼େ ବାହାରକୁ ବୁଲି ଯିବାର ପ୍ରୋଗ୍ରାମ କରାଯାଏ। ବର୍ଷର ଅନ୍ୟ ସମୟରେ ଦୁଇ ତିନି ଦିନ ଛୁଟି ମିଳିଗଲେ, ଗାଁରେ କଟାଇ ଆସୁ।

ମା ମରିଯିବା ପରେ ଘର ସର୍ବମୟ କର୍ତ୍ତ୍ରୀ ହେଲା ଆମର କମାର-ମା। କମାର-ମା କହି ତା ଅର୍ଥ ନ ବୁଝାଇଲେ ଚଳିବ ନାଇଁ। ଆମ ଘର ସାମ୍ନାରେ ସାଉଁତି ସାହି।

'ସାଉଁଟି' ଅର୍ଥ କେତେକ କହନ୍ତି ସାଉଁଟାରୁ ସାଉଁଟି। ସାଉଁଟା ମାନେ, ଗୋଟେଇ ନେବା। ଏଣେ ତେଣେ ପଡ଼ିଥିବା ଜିନିଷକୁ ସାଉଁଟି ନିଆହୁଏ। କହନ୍ତି ଏ ଅଞ୍ଚଳର କୌଣସି ଏକ ବିଶେଷ ଗଣ୍ଡଗୋଳ ଓ ଗୃହଯୁଦ୍ଧ ପରେ (ହୋଇଥାଇ ପାରେ ମରହଟ୍ଟା ବର୍ଗୀମାନଙ୍କର ଅତ୍ୟାଚାର ପରେ) ଏଣେତେଣେ ବିଛାଡ଼ି ହୋଇ ପଡ଼ିଥିବା ଲୋକସବୁଙ୍କୁ ସାଉଁଟି, ସରଦାର ନିଜର ଲୋକଙ୍କୁ ଆଉ ଥରେ ଥଇଥାନ କରିଥିଲେ। ଆଉ ସେଇ ସାଉଁଟି ହୋଇଥିବା ଲୋକେ ହେଲେ ସାଉଁଟି। ମାନେ ସେମାନେ ହେଲେ ଏ ଅଞ୍ଚଳର ନୂତନ ଅଧିବାସୀ। ଆଦିବାସୀ ତ ରହିଲେ ଜଙ୍ଗଲରେ, ଜନବସତି ସୃଷ୍ଟି କଲେ ଏଇମାନେ। ସେମାନଙ୍କ ଭିତରେ ନୂଆ ବୋହୂର ନା ଦେବାର ଗୋଟେ ପ୍ରଥା ରହିଛି। ବୋହୂ ବାହା ହୋଇ ଆସିଲେ ଯେଉଁ ଗାଁର ଝିଅ, ସେଇ ଗାଁ ନାଁରେ ତାକୁ ଡକା ହୁଏ। ମାନେ ଗରୁଆଁର ଝିଅକୁ ଗରୁଁଆଣୀ, ଯଶିପୁର ଝିଅ ଯଶିପୁରିଆଣୀ ଏମିତି। ସେଇ ସୂତ୍ରରେ ଯେଉଁ ସ୍ତ୍ରୀ ଲୋକଟିକୁ 'କମାର ମା' କହୁଛି, ତାର ଡାକ ନାଁ ହେଲା କମାରମରିଆଣୀ। ତା ବାପଘର ହେଲା କେଉଁଝର ପାରିର କମାରମରା- ସେଇଠୁ ହେଲା କମାରମରିଆଣୀ। ଏଡ଼େ ବଡ଼ ନାଁରୁ କଟିକାଟି ଆମଘରେ ତାକୁ ମୋ ମା ଡାକେ କମାର, ଆଉ ଆମର 'କମାର ମା'।

କମାର ଆଉ ତା ସ୍ୱାମୀ 'ଦୋଳ' ଦୁହେଁ ବାହାଘର ପରେ ମୋ ମା ସହ ଆସିଥିଲେ ଅଜାଘରୁ। କମାର ବୁଝିଲା ଘର କଥା ଆଉ ତା ସ୍ୱାମୀ ଦୋଳ, ବୁଝିନେଲା ଜମିବାଡ଼ି କଥା। ବାବା ଆମର ଖେଳ, ଥିଏଟର୍ ଆଉ କ୍ଲବ ଛଉନାଚ ଇତ୍ୟାଦି କଥାନେଇ ବ୍ୟସ୍ତ। ମା ଘର ଚଳାଏ ଏଇ ଦୁଇ ଜଣଙ୍କୁ ନେଇ, ମୂଲିଆ ଚାକର ବାକରଙ୍କ ହାତରେ। ଦୁଇ ଜଣଙ୍କର ନାମ ଡାକ ଥାଏ ସଢୋଟ ପଣିଆରେ। ଗାଁର ଅନ୍ୟମାନଙ୍କ ଘରର ମୂଲିଆ ହଳିଆ ଧାନ ନେଇଗଲେ କି ଖାଇଗଲେ ବୋଲି ଆପତ୍ତି ଅଭିଯୋଗ ଥାଏ, କିନ୍ତୁ ସମସ୍ତଙ୍କ ମୁହଁରେ ଗୋଟିଏ କଥା ଦୋଳପରିକା ଲୋକ ନାହିଁ। ନିହାତି ପରିଶ୍ରମୀ ଲୋକ ନୁହେଁ ଦୋଳ। ହେଲେ କଣ ଟିକେ ମାରିଦେବି କି ନେଇଯିବି ସେ କଥା ହୋଇପାରିବ ନାହିଁ।

ଏଣେ ଘର କମାର ମଧ ସେଇ ଉପାଦାନରେ ଗଢ଼ା। ରୋଷାଇ ଘର, ସରଘର, ଧାନ ଅମାର ସବୁ ଚାବି ତା' ହାତରେ। ସକାଳୁ ରାତି ପର୍ଯ୍ୟନ୍ତ ଘର ଚଳାଇବା ଓ ଚାଷବାସ ବ୍ୟବସ୍ଥାସବୁ ସେଇ କରେ। କିନ୍ତୁ ମା'କୁ ନ କହି କଣ ଟିକେ ଖାଇଦେବି କି ଦେଇଦେବି, ସେ କଥା ହେବ ନାହିଁ। ଖାଲି ସେତିକି ନୁହେଁ ଅଡ଼ିଶା ପଡ଼ିଶା ଭାଇ ଆରା ଘର। ହଠାତ୍ କାହାଘରେ ଚିନି ନାହିଁ କି ଗୁଆଘିଅ ନାହିଁ ବୋଲି ଟିକେ ଉଧାର ଧାର ମାଗି ଆସିଲେ ମା କିଛି କହିବା ପୂର୍ବରୁ ସେ ଆରମ୍ଭ କରିଦେଇଥିବ- "ଆମର କିସ ଚିନି ଅଛି କିଗୋ ମା, କାଲି ପରା ପଇସା ଦେଇଥିଲ ଆଣିତେ ଯେ 'ବୁଲା' ଭୁଲିଗଲା। ଆଜି ଆଣିବ।" ବାସ ମା ମୁହଁ ଚୁପ୍। କିଛି କହିପାରେନି ତା କଥା ଉପରେ

ମା। କାରଣ, ଅଛି ନ ଅଛି ସବୁ ସେଇ କମାର ଜାଣେ। ଖାଲି ସେତିକି ନାହିଁ। ଆମେ ଛ' ଭାଇ ଭଉଣୀଙ୍କୁ କମାର ମା'ର ଆଠ। ଲଗା ଲଗି ହୋଇ ଆମେ ସବୁ ଛୁଆ ଜନ୍ମ। କେତେବେଳେ ଆମ ଭିତରୁ କିଏ କିଏ (କେହି ନ ହେଲେ ମୁଁ ନିଶ୍ଚେ) ତା କ୍ଷୀର ଖାଇଚୁ। ଏଣୁ ସେ ଆମର କମାର ମା'। ଭଉଣୀମାନେ ବାହାହୋଇଗଲା ପରେ ସେଇ କମାର ମା'ହିଁ ଆଚାର, ବଡ଼ି, ଆମ୍ବୁଲ, ଆରିଷା ପିଠା, ଖସାଲଡୁ ଇତ୍ୟାଦି କରି ପଠାଏ। ଆମ ଆଡ଼େ ସବୁଠୁ ବଢ଼ିଆ ଜିନିଷ ହେଲା ଆଖୁବଡ଼ି- ସେ ଜିନିଷଟା ତିଆରି ହୋଇ ସମସ୍ତଙ୍କ ଘରକୁ ଯାଏ, ସେଇ କମାରମା'ପାଇଁ।

ଆମେ ଯେତେବେଳେ ଗାଁକୁ ଆସୁ ତା ପାଦ ତଳେ ପଡ଼େ ନାହିଁ। ତା'ର ସବୁ ପୁଅଝିଅ ଆମରି ଘରେ ପ୍ରଥମେ ଟହଲିଆ କି ଚାକର କାମ କରି ତା'ପରେ, ପୁଅ ପିଲା ସବୁ ବାରମାସିଆ ଓ ହଳିଆ ହୋଇ ଜୀବନ ଆରମ୍ଭ କରିଚନ୍ତି ଓ ଝିଅମାନେ ମଧ ରୋଷାଇ ଘରୁ ସବୁ କାମ ଶିଖି ବାହା ହୋଇ ଯାଇଚନ୍ତି। ଥରେ ମନେ ଅଛି, ଦୋଳର ଦେହ ଖରାପ ହୋଇଥିଲା। ମା ବାବା ନ ଥିଲେ ଘରେ। ଭଉଣୀ ସବୁ ବାହାହେଲେ, ଆମେ ସବୁ ଚାକିରି କଲୁ। ବାବା ମା ସେଇ ଧାନକଟା ସମୟରେ ଆସନ୍ତି ଆଉ ଦୁଇ ମାସ ରହି ଗାଡ଼ି ଧରି ପୁଅ ଝିଅ ଘର ବୁଲୁଥାନ୍ତି। ପୁଣି ଧାନବୁଣା ବେଳେ ଓ ବଛା ବିହିଡ଼ା ବେଳେ ଥରେ ଥରେ, ଏମିତି ରାଉଣ୍ଡ ମାରୁଥାନ୍ତି ବର୍ଷସାରା। ଛଅଟା ପିଲାଙ୍କ ପାଖରେ ଦିନ ଅଣ୍ଟେ ନାହିଁ।

ଦୋଳର ଦେହ ଖରାପ ହେଲା। ଛାତିରେ କଫ ତା ସାଙ୍ଗକୁ ଜ୍ୱର। ବାବା ମା ନାହାନ୍ତି। କମ୍ପାଉଣ୍ଡର ବାବୁ କହିଲେ ତାକୁ ବାର୍ଲି ନ ହେଲେ ସାଗୁ ଦେବା ଦରକାର। ଔଷଧଗୁଡ଼ାକ ଭାରି ଦାମିକା। ଔଷଧ କିଣା ପରେ ହାତରେ ପଇସା କଣ୍ଟା କଣ୍ଟି। ବାର୍ଲି ସାଗୁ ସାଙ୍ଗକୁ ଚିନି ଟିକେ ଦରକାର। ସାଗୁଦାନା ନ ହେଲେ ବା କିଣିଆଣିବ ଦୁଇ ଅଣାର, କିନ୍ତୁ ଚିନି ଦର ଯାହା ହେଇଚି ହାତ ପାଉ ନାହିଁ। ଚାଉଳ ଡାଲି ତେଲ ଲୁଣ ସବୁ ମା ବାହାରେ ରୋଷାଇ ଘରେ ରଖି ଦେଇ ଯାଇଚନ୍ତି। ଗାଈକ୍ଷୀର ବୁଢ଼ାକୁ ଖାଇବାକୁ ଦେବାକୁ, ମା କହି ଯାଇଚନ୍ତି। ହେଲେ ସରଘରେ ଭିତରେ ଚିନିଟିଣ। ଚାବି ହାତରେ କିନ୍ତୁ ମା'ଙ୍କୁ କହି ନାହିଁ। ବାହାର କରିବ କମିତି? ଦି'ଦିନ ଗଲା। ଜ୍ୱର କମିଲେ ବି ଛାଡୁ ନାହିଁ। କମ୍ପାଉଣ୍ଡର ବାବୁ କହିଲେ ଗାଈଦୁଧ ଦିଅ ନାହିଁ। ହଜମ ହଉ ନାହିଁ। ସାଗୁ ଆଣି ରାନ୍ଧି ଦେଲା ସିନା, ପାଟିକୁ ଟିକେ ନେଇ ଥୁ ଥୁ କରି ପକେଇ ଦେଲା ଦୋଳ। ଲୁଣ ଟିକେ ଦେଇ କ୍ଷୀରିପରି କରି ଦେଇଥିଲା। ଯେତେ ଖୋସାମତ କଲେ ବି ଖାଲି କହିଲା ଟିକେ ଚିନି ଦେଉନୁ।

କମାରମା ଭାବିଲା କପେ ଚିନି କାଢ଼ିବ। ନା 'ଧରମ ସହିବ ନାହିଁ' ଭାବି ପଡ଼ିଶା ନିନିକାକାଙ୍କଘରୁ ଚିନି ଟିକେ ମାଗି ଆଣି ସାଗୁ ରାନ୍ଧି ଖାଇବାକୁ ଦେଲା ଦୋଳଙ୍କୁ।

ମା ବାବା ଯେତେବେଳେ ଫେରିଲେ ଘଟଣାଟା ଶୁଣି ଅବାକ୍ ହୋଇଗଲେ। ତା'ପରେ ସବୁଆଡ଼େ କମାରମା ବିଷୟରେ ଏଇ କଥାଟା କହି ବୁଲିଲେ। ଖାଲି ଆମେ କାହିଁକି ଯେଉଁମାନେ ଆମ ଘର ସହ ପରିଚିତ ଓ କମାରମାକୁ ଜାଣିଥିଲେ ସମସ୍ତେ, ତା ନାଁ ଶୁଣିଲେ ଧନ୍ୟ ଧନ୍ୟ କହିବାକୁ ଲାଗିଲେ।

ଏ ଗଲା ସେଦିନର କଥା। ଦୋଳ ବୁଢ଼ା ମଲାଣି, କେତେ ଗୁଡ଼ାଏ ବର୍ଷ ହେଲାଣି। କମାର ହାତରେ କିନ୍ତୁ ସବୁ ଚାବି ସେମିତି। ସାନ ପୁଅଟା ଟିକେ ରୋଗିଣା। ତାକୁଇ ବାହାକରି ବୋହୂ ନେଇ ଏଡ଼େ ବଡ଼ ଘରଟା ଚଳାଇ ନେଉଚି ସିଏ। ସାନପୁଅ ବଇଁଶୀ ଜମିବାଡ଼ି କଥା ବୁଝେ ଆଉ ବୋହୂ ତାର ଘର ଚଳାଇ ନିଏ। ନାତି ନାତୁଣୀ ସବୁ ତାକୁ ବେଢ଼ି ଉଠାବସା କରନ୍ତି। ଶୁଅନ୍ତି ତା'ରି ସାଙ୍ଗରେ। ଏଡ଼େବଡ଼ ଘରେ ଆଉ କେହି ନାହାନ୍ତି। ପୁଅ ବୋହୂ ପଛପାଖ ଘରେ ରହନ୍ତି ଧାନ ଅମାର ଆଡ଼କୁ। ଆଉ ଏପଟେ ଶୋଇବା ଆଉ ଦାଣ୍ଡପୁର ମଝି ମେଲାରେ କମାରମା ନାତି ନାତୁଣୀ ନେଇ ରାତିରେ ଶୁଏ। ଘର ଜଗି ପଡ଼ିଥାନ୍ତି ବଂଶସାରା।

ଆମେ ଆସିବାଟା ତାଙ୍କପାଇଁ ପରବ। ପୁନେଇ କହିଲେ ଆମଆଡ଼େ ପର୍ବକୁ ବୁଝାଏ। ଦୋଳଯାତ୍ରା ପୁନେଇ ତ ମକର ରଜ ବି ପୁନେଇ। ଆଉ ଖାସି ମାରିବା ହେଲା ଏଇ ପୁନେଇଗୁଡ଼ାକର ସବୁଠାରୁ ବଡ଼ ଧରଣର ପାଳନ। ଆମେ ଗାଁକୁ ଗଲେ ବାଡ଼ିପଟେ ଗୋଟେ ଖାସି ମରାହୁଏ ଆଉ ସକାଳ ଜଳଖିଆ ଖାଇବା ମାଂସ ମୁଢ଼ିରୁ ଆରମ୍ଭ ହୁଏ। ଏଆଡୁ ନାନା ରକମର ମିଠା, ଫଳ ନେଇ ଆମେ ଯାଇଥାଉ। ବେଶ୍ ଖିଆ ପିଆ ମଉଜ ମଜଲିସ୍ ହୁଏ। ସନ୍ଧ୍ୟାକୁ ଗାନ ବାଜନା ହୁଏ। ଦୁଇ ତିନି ଦିନ ପରେ ଆମେ ପୁଣି ଫେରିଆସୁ।

ଘରେ ଆମେ ପହଞ୍ଚିଲେ ଭାଇଆରା ଘରୁ ପିଲାଏ ଧାଇଁ ଆସନ୍ତି। ସମସ୍ତଙ୍କୁ ଲଜେନ୍ସ, ଚକୋଲେଟ୍ ଦେଇ ଆପ୍ୟାୟିତ କରାଯାଏ। ବଡ଼ ବଡ଼ିଆ ଖୁଡ଼ୀ, କାକା, ବଡ଼ବାପା ଇତ୍ୟାଦିଙ୍କପାଇଁ ଫଳ ମିଠା। ମିଠା ବା ଫଳ କମାରମା ଆଉ ତାଙ୍କ ପିଲାଙ୍କୁ ପ୍ରଥମେ ଦେଇ ଦିଆଯାଏ, କାରଣ ଶେଷକୁ କାଳେ ଅଣ୍ଟିବ ନ ଅଣ୍ଟିବ। ବରଂ ତାଙ୍କପାଇଁ ଆଗରୁ ଗୋଟେ ପ୍ୟାକେଟ ତିଆରି କରାହୋଇଥାଏ।

ସେଦିନ କିନ୍ତୁ କିଛି କାଲାକନ୍ଦ ବଳିଥାଏ। ଯାହା ଯେମିତି ଯାକୁ ତାକୁ ଖାଇବାକୁ ଦେଇ, ଆମ ଆସିବା ଦିନ ସୁଦ୍ଧା ସକାଳକୁ କିଛି ବଳକା ରହିଯାଇଥାଏ। ଆମେ ବାହାରିବୁ ଦିନ ଏଗାରଟା ବେଳକୁ। ''ଖିଚୁଡ଼ି ଆଉ ଅଣ୍ଡା ତରକାରି ଶୀଘ୍ର କରିଦେବୁ'', ବୋଲି କମାର ମା' ତା' ବୋହୂକୁ ଆଗରୁ କହି ରଖିଥାଏ। ତା' ସାଙ୍ଗକୁ ବିଭିନ୍ନ ପ୍ରକାର ବଡ଼ି ଭଜାର ଅର୍ଡ଼ର ମଧ ଦେଇଥାଏ ସେ। ମୋ ସ୍ତ୍ରୀ କହୁଥିଲେ- ''ନିନି କାକା ବହୁତ ଭଲ ପାଆନ୍ତି କାଲାକନ୍ଦ। କାଲି ସକାଳୁ ଯାହା ମିଠା ଅଛି ପଠାଇଦେବା।''

ସକାଳୁ କମାର ମା ଟିଫିନ କେରିଆର ଇତ୍ୟାଦି ଆମେ ଯାହା ନେବା କଥା, ସଫା କରାଇ ଦେଇଥାଏ। ସେଇ ଟିଫିନ କେରିଅରରୁ ମିଠାତକ ବାହାର କରି ଗୋଟେ ପତ୍ରପୁଡ଼ିଆ କରି ସେ ଘର ପଛ ଆଡ଼କୁ ନେଇ ବାହାରି ଯିବାର ଦେଖି ମୋ ସ୍ତ୍ରୀ ଆଶ୍ଚର୍ଯ୍ୟ ହୋଇଯାଇଥିଲେ। ନ ଜାଣିଲା ପରି ଟିକିଏ ଛାଡ଼ି ପଛଆଡ଼କୁ ଗଲାବେଳକୁ ଦୂରରେ ଦେଖିଲେ ସେ ନାତିନାତୁଣୀମାନଙ୍କୁ ସେଇ ମିଠାକୁ ଭାଗ କରି ଖାଇବାକୁ ଦେଉଚି। ଅବଶ୍ୟ ଏମିତି ସମସ୍ତଙ୍କ ସାମ୍ନାରେ ନେଇ ବାଣ୍ଟି ଦେଇଥିଲେ କଥାଟା ଆମକୁ କିଛି ଜଣାପଡ଼ନ୍ତା ନାହିଁ। କାରଣ ଆମେ ପହଞ୍ଚିଲେ ଯାହାସବୁ ନେଇଥାଉଁ, ସେ ହିଁ ବଢ଼ାବଢ଼ି କରେ। କିନ୍ତୁ ଯେପରି ଭାବରେ ଲୁଚାଇ ନେଇ ପଛପଟେ ଚୁପ୍ ଚାପ ପିଲାଙ୍କୁ ବାଣ୍ଟି ଦେଲା- ସତେ ଯେପରି ଆମ୍ଭମାନଙ୍କୁ ଲୁଚାଇ ସେ ଏ କାମଟା କରୁଚି।

ସ୍ତ୍ରୀ ଫେରିଆସି ମୋତେ କଥାଟା କହୁଥିଲେ ଆଉ ଆମେ ଭୀଷଣ ଆଶ୍ଚର୍ଯ୍ୟ ହୋଇ ଯାଇଥିଲୁ। ନିଜପାଇଁ, ନିଜ ସ୍ୱାମୀପାଇଁ ଯେଉଁ ମଣିଷଟା ଏମିତି ଚିକିଟିକେ ନେଇ ପାରି ନ ଥିଲା, ଆଜି ଏଇ ପରିଣତ ବୟସରେ ନାତିନାତୁଣୀଙ୍କପାଇଁ କିପରି ଦୁର୍ବଳମନା ହୋଇଗଲା !



# ବିଶ୍ୱାସ

ମୁଁ ଜାଣିଥିଲି ପିଇସା ଘରେ ଏଇଟା ସବୁଦିନେ ଗୋଟେ ଗରମା ଗରମ ଆଲୋଚନାର ବିଷୟ। ପିଇସାଘର ପିଲାମାନେ ଯେତେବେଳେ ଛୋଟଥିଲେ, କଥାଟାକୁ ଯେପରି କୁହାଯାଇଥିଲା ସେମିତି ହିଁ ଗ୍ରହଣ କରି ନେଇଥିଲେ। କିନ୍ତୁ ବୟସ ବଢ଼ିବା ସଙ୍ଗେ ସଙ୍ଗେ ପିଲାଏ ସବୁ ଭଲ ପାଠ ପଢ଼ି ଚାକିରି କଲେ। ବିଶେଷକରି ବୁଢ଼ାଭାଇ, ଟିଫ୍ଇଂଜିନିଅର ଥିଲେ। ତାଙ୍କ ସାତ ଭାଇ ଭଉଣୀ ଭିତରୁ ସେ ସବୁଠୁ ବଡ଼, ଭାରି ସିଧା ସିଧା ଟାଙ୍ଗ ଟାଙ୍ଗ କଥା। ସଚ୍ଚୋଟ କର୍ମଠ ଅଫିସର ହିସାବରେ ନାଁ ଥିଲା। ସତ କହିବାକୁ, ଠିକ୍ କଥାଟା କହିବାକୁ ତାଙ୍କର ମୁହଁ ଉପ୍ରୋଧ ନାହିଁ। ସେ ତାଙ୍କ ବାପାଙ୍କୁ ଏଇ କଥା ନେଇ ସିଧା ସିଧା କହନ୍ତି- ''ତମେ ଯାହା କହ ବାପା, ତମ ବାପ ଗୋଟେ ଭୀରୁ। ଘର ଅବସ୍ଥା ଦେଖି ଏତେ କଷ୍ଟ କିଏ କରୁଚି ଭାବି ଖସିଗଲା, ବାବାଜି ହୋଇ।''

କଥା କଣ କି, ପିଲାଙ୍କ ଗୋସ-ବାପା ବାବାଜି ହୋଇ ଯାଇଥିଲେ। ଜମିବାଡ଼ି କିଛି ଥିଲା। ବାହା ହୋଇଥିଲେ ଯାହାର ହାତଧରି, ଲକ୍ଷ୍ମୀବନ୍ତ ସ୍ତ୍ରୀଟିଏ। ଘରକୁ ଆସୁ ନ ଆସୁଣୁ, ଘର ଅବସ୍ଥା ଦେଖି ଜମିବାଡ଼ି ଖବର ବୁଝିବା ଆରମ୍ଭ କରି ଦେଇଥିଲା ବୋହୂପଣିଆ ଛାଡ଼ି ଦି'ଟା ମାସ ନ ଯାଉଣୁ। ଘରେ ଶାଶୁ, ଶ୍ୱଶୁର ବସି ଗଲେଣି। ଶ୍ୱଶୁରଙ୍କ ବାତ ଆଉ ଶାଶୁଙ୍କ ଶ୍ୱାସ ତାକୁ ଦେଖାଶୁଣା, ତା ସାଙ୍ଗକୁ କେଉଁ ଜମିରେ କଣ କେତେ ବୁଣା ହେବ, ଧାନ କଟା ବେଳକୁ ମୁଗ ହେଲା କି ନାଇଁ ସବୁ ଚଳାଇ ନେଲେ ସିଏ। ଏଣେ ଘର ପଛ ଆଡ଼େ ଅମୃତଭଣ୍ଡା, ସଜନା, କଦଳୀ ଇତ୍ୟାଦି ଇତ୍ୟାଦି ସହ ସବୁ ଋତୁରେ ବିଭିନ୍ନ ପନିପରିବା- ଘର ପୂରି ଉଠୁଥିଲା।

ପିଉସାଙ୍କ ବାପ, ଏକେ ତ ମହା ଅଳସୁଆ, ତା ସାଙ୍ଗକୁ ଗଂଜେଇ ଅଭ୍ୟାସଟା ପିଲାଦିନୁ ବନ୍ଧୁ ମେଳରେ କି କୁମ୍ଭିପଟିଆ ବାବାଜି ସାଙ୍ଗରେ ବସି କିଛିଦିନ ଅଭ୍ୟାସ କରି ନେଇଥିଲେ। ବାହାଘର ଆଗରୁ ଯେଉଁ ଜମିରୁ ବର୍ଷକୁ ଖାଇବା ଚଳୁ ନ ଥିଲା ସେଇଥିରୁ ପରିବାର ଚଳି ପ୍ରତି ବର୍ଷ ଖଣ୍ଡେ ଖଣ୍ଡେ କରି ଘର ଛପର ବାହାର କରି ଖପର ହେଲା ଦେଖି; ପୁରୁଣା ଚିଲିମିଆ ବନ୍ଧୁଙ୍କୁ ଜୁଟାଇ ସେ ମଠଘରେ ଚବିଶ ଘଣ୍ଟା ଖୋଳ କରତାଳ ଆରମ୍ଭ କରି ଦେଇଥିଲେ। ତିନି ତିନିଟା ଛୁଆ ତିନି ବର୍ଷରେ, ତଥାପି ଘର ଠିକ୍ ଚଳାଇ ନେଉଥିଲେ ବୁଢ଼ୀ। ଭଗବାନ କିନ୍ତୁ 'ସହିଲେ ନାହିଁ, ବଇଦ କରିବାକୁ ବି ବେଳ ମିଳିଲା ନାହିଁ। ଭିତରେ ଭିତରେ ଜରଟା ଥିଲା କି କଣ ମକରମେଳାରୁ ଫେରି ବୁଢ଼ା ଦେଖିଲେ ବୁଢ଼ୀ ଦେହରେ ଜ୍ୱର ଭର୍ତ୍ତି। ସକାଳୁ ବଇଦ ପାଖକୁ ଯିବି ଯିବି କହି ଓପରଓଳି ହୋଇଗଲା। ବଇଦ ବୁଢ଼ା ସନ୍ଧ୍ୟାହେଲେ କୁଆଡ଼େ ବାହାରିବାକୁ ନାରାଜ। ଜୋର୍ ଜବରଦସ୍ତ କରିଥିଲେ ଆସିଥାନ୍ତା, ହେଲେ ଔଷଧ ଦି'ପାନ ଧରି ସକାଳୁ ଆସିବାର ବାରତା ନେଇ ଫେରି ଆସିଲେ ବୁଢ଼ା। ଫେରିବାବେଳକୁ ବାପ ବୁଢ଼ା ଘୁଷୁରି ଘୁଷୁରି ଆସି ଦାଣ୍ଡଦ୍ୱାର ମୁହଁରେ ବ୍ୟସ୍ତ ହୋଇ ବସିଛନ୍ତି। ପୁଅକୁ ଘରକୁ ପଶିବାକୁ ନ ଦେଇ ପାଟି କଲେ "ବୋହୂ ହଳଦୀ ବାନ୍ତି କରୁଚି, ଧାଇଁଯା। ଯେମିତି ହେଲେ, ଡାକି ନେଇ ଆସିବୁ- ଏତିକି ଡେରି କଲୁ।" ଘର ଭିତରକୁ ଧାଇଁ ଯାଇ ଦେଖିଲେ ଅବସ୍ଥା ଅଣଆୟତ ପରି ଲାଗୁଚି। ରାତିରେ ବଇଦ ଆସିଲା, ରାତିସାରା ବସି ରହିଲା। ସକାଳୁ ଭଗବାନ ଭରସା କହି ବାହାରି ଗଲା। ଆଉ ଗୋଟେ ରାତି କଟେଇ ଶାଶୁ ଶ୍ୱଶୁର ଛୁଆ ତିନୋଟିଙ୍କୁ ଅକର୍ମା ସ୍ୱାମୀ ହାତରେ ଛାଡ଼ି ବିଦାୟ ନେଇଗଲେ ବୁଢ଼ୀ ଆରପୁରକୁ।

ଭାଇଆରା ଘର। ବଶାହ କାମ ସରିଲା। ଦୂର ସମ୍ପର୍କୀୟ ବିଧବା ଭଉଣୀ ଜଣକୁ ଆଣି ପିଲା ଆଉ ବୁଢ଼ା ବାପ ମାଙ୍କ ଭାର ଦେବାରୁ, ଘର ସିନା ଚାଲିଲା, ଜମିବାଡ଼ି ଚାଷ ବାସ ଆଉ ସେମିତି ଉଧେଇଲା ନାହିଁ। ମା ଗଲା ଦିନରୁ ସାନ ଝିଅଟାର ଦେହ ଭଲ ରହୁ ନ ଥିଲା, ସେ ବି ଦିନେ ସକାଳୁ ଆଉ ଗାଁ ଗାଁ ହୋଇ ପାଟି କରୁ ନ ଥିଲା। ବଡ଼ ଝିଅଟାକୁ ଅଜାଘର ଆସି ନେଇଗଲେ- ପୁଅକୁ ନେବାକୁ କହିବାରୁ ଗୋସମା ବୁଢ଼ୀ ଆଉ ଥୟ ଧରି ପାରିଲା ନାହିଁ। କାନ୍ଦି କାନ୍ଦି ଅକର୍ମା ପୁଅକୁ ବକିଲାରୁ ନାତି ଘରେ ରହିଲା ସିନା! ହେଲେ ଘର କଥା ବୁଝୁଚି କିଏ, ପୁଅର ସ୍କୁଲଯିବା ବୟସ ଡେଇଁଲାଣି। ତାର ପଢ଼ାପଢ଼ିର ବ୍ୟବସ୍ଥାପାଇଁ କାହାରି ଚିନ୍ତା ନାହିଁ। ଏମିତି ଅବସ୍ଥାରେ ହଠାତ୍ ସମସ୍ତଙ୍କୁ ଛାଡ଼ି ବେଶୀ ଦୂର ନାହିଁ, ବାଟ ପନ୍ଦର କୋଶ ହେବ ନାଥ ଗାଁ ମଠରେ ଯାଇ ରହିଲେ ପିଉସାଙ୍କ ବାପା। ଗେରୁଆ ପିନ୍ଧିଲେ, ଦାଢ଼ି ନିଶ ବାଳ ଛାଡ଼ି ଦେଇ ଗଞ୍ଜେଇ ନିଶାରେ ହରିନାମ ଜପି ଜପି ସଂସାରଟାକୁ ଭୁଲିଗଲେ।

କିଛି ଅଚଳ ରହିଯାଏ ନାହିଁ। ଅଜାଘର ଅବସ୍ଥା ବି ପଡ଼ିଗଲାଣି। ତଥାପି ବଡ଼ ଝିଅଟାର ହାତକୁ ଦି'ହାତ କରି ଦେଇଥିଲେ ବୟସ ବାର ବର୍ଷ ନ ହେଉଣୁ। ସିଏ କେଉଁଠି ବାହା ହୋଇ କଣ ଘର କଲା କେହି ଖବର ରଖିବାକୁ ନାହିଁ। ଯାହାହେଉ ସେଇ ପୁରୁଣା ମୂଲିଆ ସବୁ ମିଶି, ଚାରି ମାଣ ଜମିରୁ ନିଜେ ଖାଇ ବାବୁ ଘରକୁ ବି ଚଳାଇ ନେଲେ। ବୁଢ଼ାବୁଢ଼ୀ ମଲାବେଳକୁ ନାତି ଦଶ ବର୍ଷ ବୟସରେ ତୃତୀୟ ଶ୍ରେଣୀ ପଢୁଥିଲା। ମାମୁଁ ଘର ଆଉ କେହି ଭଣଜାକୁ ନେଇ ରଖି ପଢ଼ାଇବା ଅବସ୍ଥାରେ ନ ଥିଲେ। ସେ ମାମୁଁ ବି ସାବତ ଭାଇ, ଏଣୁ ଇଆଡ଼େ ଆଉ ମୁହାଁଇ ନାହାନ୍ତି- ବଡ଼ କଥା ଝିଅଟାକୁ ଉଠାଇ ଦେଇଥିଲେ।

ହେଲେ ତୃତୀୟ ଶ୍ରେଣୀ ଏଲ୍.ପି. ପରୀକ୍ଷାରେ ବୃତ୍ତି ପାଇ ଏମ୍.ଇ. ପଢ଼ିବାକୁ ଯିବାକୁ ହେଲା ସେଇ ବିଧବା ପିଇସୀ ଘର ଗାଁକୁ। ତାଙ୍କ ଶାଶୁଘର ଅବସ୍ଥା ଭଲ ନ ହେଲେ ବଇଦକୁ ବି ରହିବା ଘରର ଅଭାବ ନ ଥିଲା। ଏ ଗାଁରୁ ମୂଲିଆ ଧାନ ଚାଉଳ ପନି ପରିବା ପଠାଉଥିଲେ ଏଣୁ ସେଇଠି ପିଇସା ଆମର ଚଳିଗଲେ। ପଢ଼ିବାରେ ଅସୁବିଧା ହେଲା ନାହିଁ, ସବୁ ପରୀକ୍ଷାରେ ପ୍ରଥମ ହୋଇ ପାସ କରୁଥିଲେ। ମେଟ୍ରିକ ପଢ଼ିବାବେଳକୁ ଗଡ଼ଜାତ ରାଜ୍ୟରେ ସଦର ମହକୁମାରେ ହଷ୍ଟେଲରେ ବିନା ପଇସାରେ ରହି ପାଠ ପଢ଼ିବାର ସୁବିଧା ମିଳିଗଲା। ମେଟ୍ରିକ ପଢ଼ାବେଳକୁ ବିହାର ଓଡ଼ିଶାରେ ପ୍ରଥମ ପାଞ୍ଚ ଜଣକ ଭିତରେ ରହି ପାଟନାରେ କଲେଜରେ ପଢ଼ିଲେ।

ଆମ ବଡ଼ବାପାଙ୍କ ସହ ସେଇ କଲେଜ ଜୀବନରେ ତାଙ୍କ ପରିଚୟ ହୁଏ। ଦୁଇ ଜଣ ମେଡିକାଲ ପଢ଼ିବାର ମସୁଧା କରନ୍ତି, ହେଲେ ତାଙ୍କ ପଢ଼ା ଖର୍ଚ୍ଚ? ଗଡ଼ଜାତ ବୃତ୍ତି ଯାହା ମିଳିବ ଅଣ୍ଟିବ ନାହିଁ। ସେତେବେଳେ ମୋ ସାଆନ୍ତ ବାପା ବଞ୍ଚିଥିଲେ। ବଡ଼ବାପା ପୂଜା ଛୁଟିରେ ଘରକୁ ଆସି ଗୋଟେ ପ୍ରସ୍ତାବ ଦିଅନ୍ତି। ''ଆମ ସାନ ପିଉସୀକୁ ବାହାଘର କରି ତାଙ୍କ ମେଡିକାଲ ପଢ଼ା ଖର୍ଚ୍ଚ ବହନ କରିବା'' କଥାଟା ସଙ୍ଗେ ସଙ୍ଗେ ଗ୍ରହଣ ହୋଇଗଲା, ଆଉ ପାଞ୍ଚଟା ବର୍ଷ ଭିତରେ ସେ ଡାକ୍ତର ହୋଇ ବାହାରିଲେ। କୁଆଡ଼େ ଶେଷବର୍ଷ ବେଳକୁ ସାଆନ୍ତବାପା ମାରାପଡ଼ିବାରୁ ଶଳାମାନେ ଟଙ୍କା କଥା ନାଁ ଧରିଲେ ନାଇଁ। ଯାହାହେଉ ଡାକ୍ତର ହୋଇ ଓଡ଼ିଶା ସାରା ନାଁ କରିଥିଲେ ସିଏ।

ହଁ ତାଙ୍କ ବାପାଙ୍କ ବାବାଜୀ ହେବା କଥା କହିବାକୁ ଯାଇ ତାଙ୍କ ଇତିହାସ କହିଗଲିଣି। ତାଙ୍କ ବୁଢ଼ା ବାପା ବଞ୍ଚିଥିଲେ ବହୁ ବର୍ଷ। ମଝିରେ ମଝିରେ ଗଡ଼ିପଡ଼ନ୍ତି କଟକ କାଳିଆବୋଦା ମଠକୁ। ପୁଅ କଟକରେ ଡାକ୍ତର ଅଛି ଖବର ସଂଗ୍ରହ କରି ଥରେ ଦି'ଥର ବୁଲି ଯାଇଛନ୍ତି। ହେଲେ ବାପାଙ୍କ ପ୍ରତି ଜମା ସ୍ନେହ କି ଭକ୍ତି ନ ଥିଲା ପିଉସାଙ୍କର। ଘରକୁ ଆସିଲେ ପିଉସୀ ତାଙ୍କ ସେବା କରନ୍ତି- ସେବାମାନେ ମନ ମନାଇ ଖିଆପିଆ, ପଦେ ଦିପଦ କଥା। ସମ୍ପର୍କଟା କିନ୍ତୁ କେହି ଜାଣନ୍ତି ନାଇଁ, ବାହାର ସମସ୍ତଙ୍କୁ ଲୁଚାଇ ଥା'ନ୍ତି ସବୁ।

ଏମିତିକି ପିଲାମାନଙ୍କୁ ମଧ୍ୟ। ବାବାଜି ବୈଷ୍ଣବ ଏମିତି ତ ଆସନ୍ତି। ହେଲେ ପିଉସା ଜମା ତାଙ୍କୁ ଦେଖି ପାରନ୍ତି ନାହିଁ। ତାଙ୍କ ନାଁ ଶୁଣିଲେ ପାଟିକରି ଉଠନ୍ତି- କାପୁରୁଷ ଭୀରୁ କହି ସ୍ତ୍ରୀଙ୍କୁ ପାଟି କରନ୍ତି। ଏ କଥା ମୁଁ ବି ଶୁଣିଛି। ମୁଁ ଯେତେବେଳେ ରେଭେନ୍ସାରେ ଆଇ.ଏସ୍‌ସି. ପଢ଼ିବାକୁ ଗଲି ପିଉସା ସେତେବେଳେ କଟକରେ ସିଭିଲସର୍ଜନ। ତାଙ୍କ ଘରେ ପ୍ରଥମ କିଛିଦିନ ରହିଥିଲି, ହଷ୍ଟେଲରେ ଜାଗା ମିଳିବାପର୍ଯ୍ୟନ୍ତ। ହଷ୍ଟେଲରୁ ପ୍ରାୟ ଯାଏ ଓ ବହୁ ସମୟ ସେଇଠି କଟେ। ସେତେବେଳକୁ ତାଙ୍କ ବଡ଼ ପୁଅ ବୁଢ଼ା ଭାଇ ଓ ତାଙ୍କ ତଳ ନଟୁ ଭାଇ ବାହାରେ ଇଞ୍ଜିନିଅରିଂ ପଢୁଥାଆନ୍ତି। ମେଡିକାଲ କଲେଜରେ ଜଣେ ଭଉଣୀ ଓ ଭାଇ, ମାଇନିଂ କଲେଜରେ ଆଉ ଜଣେ ଏମିତି ମଣିଷପରି ମଣିଷ ହେବାପାଇଁ ସମସ୍ତଙ୍କର ବ୍ୟବସ୍ଥା ହୋଇ ଯାଇଥାଏ। ସାନ ପୁଅ ଦି'ଟା ତଳ କ୍ଲାସରେ ପଢୁଥାଆନ୍ତି, ମୁଁ ଗଲେ ମୋ ପାଖରୁ ଜଙ୍ଗଲୀ ଗପ, ବାଘଭାଲୁ ଗପ ଶୁଣିବାକୁ ଉତ୍ସୁକହୋଇ ଜଗି ବସି ଥାଆନ୍ତି।

ସେଇଠି ବହୁବାର ଶୁଣିଚି ବାପ ନାଁ ଶୁଣିଲେ ପିଉସା ଚିଡ଼ିକି ଉଠନ୍ତି। କାପୁରୁଷ ବୋଲି କହି ଗାଳି ଦିଅନ୍ତି। ହେଲେ ପିଉସୀ ତାଙ୍କୁ ବୁଝାନ୍ତି- ''ସେମିତି କହ ନାହିଁ, ତାଙ୍କରି ଧର୍ମପାଇଁ ହୁଏତ ତମେ ସବୁ ମଣିଷ ହୋଇଛ।'' ସେଥିରେ ପିଉସା ଆହୁରି ପାଟି କରନ୍ତି। ତୁଚ୍ଛାକୁ ତ ନିଜେ ନିଜ ହାତରେ ତାଙ୍କ ଜୀବନଟା ଗଢ଼ିଛନ୍ତି ବୋଲି ତାଙ୍କର ଗୋଟେ ଆତ୍ମଗର୍ବ ଥିଲା, ତାକୁ ପୁଣି ଏପରି ଏକ ଅପଦାର୍ଥ ଲୋକର ଦାନ କହିଲେ ସେ ଆହୁରି ରାଗି ଯାଆନ୍ତି। ଘଟଣାଟା ଅନେକଥର ମୁଁ ଶୁଣେ। ମୁଁ ଅବଶ୍ୟ ବାବାଜିଙ୍କର ଆସିବାବେଳେ ଦେଖି ନାଇଁ। ଆଶ୍ଚର୍ଯ୍ୟ ହୁଏ ଏ ଘଟଣାଟା ଉଠେ କାହିଁକି। ଯାହା ବୁଝିଲି ବୁଢ଼ା ବଞ୍ଚିଛନ୍ତି ସେଇ ମଠରେ, ପଡ଼ିଗଲେଣି। ବେଳେ ବେଳେ ଖବର ପଠାନ୍ତି ଔଷଧପାଇଁ କି ପଥ୍ୟ ଖର୍ଚ୍ଚପାଇଁ। ସେତକ ପଠାଇବାରେ ଅବହେଳା ନାହିଁ ପିଉସାଙ୍କର, ହେଲେ ବାବାଜିଙ୍କ ନାଁ ଶୁଣିଲେ ପିଉସାଙ୍କ ଗର ଗର ଆରମ୍ଭ ହୋଇଯାଏ। କିନ୍ତୁ ପିଉସୀଙ୍କର ଗୋଟିଏ କଥା ''ବୁଢ଼ାର ଧରମ ତମକୁ ସବୁ ଟେକି ରଖିଛି।'' ବଡ଼ ପିଲାମାନେ କେହି ଘରେ ଥିଲେ କି ଛୋଟ ପିଲାଙ୍କ ସାମ୍ନାରେ କଥାଟା ଉଠେ ନାହିଁ। ମୁଁ ବୋଧହୁଏ ବାପ ଘର ଲୋକ ବୋଲି ମୋ ସାମ୍ନାରେ ପିଉସୀଙ୍କର ଲୁଚା ଛପା ରହେ ନାହିଁ।

ଯେଉଁ କଥାଟା ପ୍ରଥମେ କହୁଥିଲି, ବୁଢ଼ାଭାଇ ତାଙ୍କ ବାପାଙ୍କୁ ମୁହଁରେ କହୁଥିଲେ ଜେଜେବାପା କଥା। ସେ ବହୁ ବର୍ଷ ପରର କଥା। ସେତେବେଳକୁ ସିଏ ଓ ତାଙ୍କ ତଳ ନଟୁ ଭାଇ ଚାକିରି କଲେଣି। ମୁଁ ଆଇ.ଏସ୍‌ସି. ପରୀକ୍ଷାରେ ୟୁନିଭର୍ସିଟିରେ ପୋଜିସନ ରଖି ପାସ କରିଥିଲି ବୋଲି ଇଞ୍ଜିନିଅରିଂ ପଢ଼ିବାକୁ ଯିବା ପୂର୍ବରୁ ତାଙ୍କ ଘରେ ଗୋଟେ ଭୋଜିଭାତର ଆୟୋଜନ ହୋଇଥିଲା। ତାଙ୍କର ସବୁ ପିଲା ଘରେ ଥିଲେ। ବୁଢ଼ା ଭାଇ କଟକରୁ ଭୁବନେଶ୍ୱର ଯିବା ଆସିବା କରୁଥିଲେ ଆଉ ନଟୁ ଭାଇ ମଧ୍ୟ ଦାରଜଙ୍ଗ ପ୍ରୋଜେକ୍ଟରୁ ପ୍ରତି ଶନିବାର ରବିବାର ଆସୁଥିଲେ। କିଛିଦିନ ଆଗରୁ ଖବର ଆସିଥିଲା 'ବାବାଜି'ଙ୍କ

ପ୍ରୟାଣ ହୋଇଯାଇଛି। ଖବର ପନ୍ଦର ଦିନ ପରେ ଦିଆ ହୋଇଥିଲା। ମଠ ମହାରାଜଙ୍କ ଆଦେଶ, ମଲା ବେଳକୁ ବଂଶର କାହାରିକୁ ଖବର ଦେଇ କ୍ରିୟାକର୍ମ କରିବା ମନା।

ବୁଢ଼ା ଭାଇ ସେଇଦିନ କହୁଥିଲେ- "ବାପା ଯାହା କହ ତମ ବାପ ଗୋଟେ ମହା ଭୀରୁ- ସଂସାରଟାକୁ ଡରି, ପିଲା ପିଲିଙ୍କୁ ଖାଇବାକୁ ଦେବାକୁ ପଡ଼ିବ ବୋଲି ବାବାଜୀ ହୋଇଗଲା।" ହଠାତ୍ ପିଉସା ଗମ୍ଭୀର ହୋଇଗଲେ; କହିଲେ- "ହେଲେ ଏତିକି ମନେରଖ, ତାଙ୍କରି ଧର୍ମପାଇଁ ଆଜି ତମେ ସବୁ ମଣିଷ ହୋଇଛ। ତାଙ୍କରି ଭଗବତ୍-ସେବା, ମୋତେ ମୋ ଗୋଡ଼ରେ ଠିଆ କରେଇଛି ଆଉ ତମେ ବି ସବୁ ଫଳ ଭୋଗ କରୁଛ।"

ମୁଁ ତାଙ୍କ ମୁହଁରୁ ଆଖି ଫେରାଇ ପିଉସୀଙ୍କ ମୁହଁକୁ ଚାହିଁଲି, ତାଙ୍କ ଆଖିରେ ଏକ ଆତ୍ମସନ୍ତୋଷର ସୁଖ। ପିଉସା ପିଲାମାନଙ୍କୁ ନୀରବ କରିଦେଇ ପିଉସୀଙ୍କ ମୁହଁକୁ ଚାହିଁ କହିଲେ- "କିହୋ, ଡେରି ହେଲାଣି ଏଥର ବଢ଼ାବଢ଼ି କର।"

●●●

# ସ୍ମୃତି

ଆସିଥିଲୁ ପ୍ରାୟ ଏଗାର ବାର ବର୍ଷତଳେ। କୁଆଡ଼େ ଗୟାପିଣ୍ଡ ଦେଇସାରିବା ପରେ ଯାଜପୁରରେ ପିଣ୍ଡ ଦେଲେ ଯାଇ ପିଣ୍ଡଦାନର ଅନ୍ତିମ କର୍ମ ଶେଷ ହୁଏ। ମୋ ଜେଜେମା ମରିବା ପରେ ବାପାଙ୍କ ଭାଗରେ ଏ କାମଟି ପଡ଼ିଥିଲା। କାରଣ ବାପାଙ୍କ ଉପର ଦୁଇ ଭାଇ ମାରା ପଡ଼ିଥିଲେ। ମୋ ଜେଜେମା ଗଲେ ସତାନବେ ବର୍ଷରେ। ବାପା ମା'ଙ୍କ ଉତ୍ତର ଭାରତ ବୁଲା ବି ହେଲା, ଆଉ ଋଷିକେଶଠାରୁ ଆରମ୍ଭ କରି ଏଲ୍ଲାହାବାଦ, ବାରାଣସୀ, ଗୟାରେ ପିଣ୍ଡଦାନ ମଧ୍ୟ ହେଲା। ବାକି ରହିଲା, ପୁରୋହିତଙ୍କ କଥା ମୁତାବକ ଯାଜପୁର ବିରଜାକ୍ଷେତ୍ରରେ ପିଣ୍ଡଦାନ ଓ ଜଗନ୍ନାଥ ଦର୍ଶନ। ଏକାଥରେ ଏତକ କାମ ସାରିଦେବା ଉଦ୍ଦେଶ୍ୟରେ ବାହାରି ଥିଲି ବାପା, ମା ଆଉ ସ୍ତ୍ରୀଙ୍କସହ।

ସକାଳୁ ସକାଳୁ ବାହାରି ଦିନ ନଅଟା ସୁଦ୍ଧା ଯାଜପୁରରେ ପହଞ୍ଚି ଶ୍ରାଦ୍ଧ କାମର ବ୍ୟବସ୍ଥା କଲାବେଳକୁ ଡେରି ହୋଇ ଆସୁଥିଲା। ଯେମିତି ହେଲେ ମଧ୍ୟାହ୍ନ ସମୟରେ ହିଁ ପିଣ୍ଡଦାନ ହେବ। ଅଗତ୍ୟା ଅପେକ୍ଷା କରିବାକୁ ହେଲା। ମନ୍ଦିର ପାଖରେ ଥୁକୁଲ ଥାକଲ୍ ଗୋରୀ ହୋଇ ବୁଢ଼ୀଟିକୁ ଦେଖିଲୁ। ମୋ ମା ଭାରି ଗପୁଡ଼ି। ଉଠିଗଲା ତାଙ୍କ ପାଖକୁ। ତାଙ୍କ ସହ କଥାବାର୍ତ୍ତା ହେଉଁ ହେଉଁ ଗାଡ଼ି ଭିତରୁ ଥାଇ ଦେଖିଲି ତାଙ୍କୁ ନଇଁ ପଡ଼ି ମା ପ୍ରଣାମ କଲା, ପାଦ ଛୁଇଁ। ବାପା ମନ୍ଦିର ଭିତରୁ ବାହାରି ଆସୁଥିଲେ। ତାଙ୍କୁ ମଧ୍ୟ ପରିଚୟ କରିଦେଲା, ବାପା ମଧ୍ୟ ନଇଁ ପଡ଼ି ନମସ୍କାର ହେଲେ। ତା'ପରେ ବୁଲିପଡ଼ି ମା ଚାରିଆଡ଼କୁ ଚାହୁଁଥିଲା, ମୋ ଉଦ୍ଦେଶ୍ୟରେ। ମୁଁ ଜାଣି ଜାଣି ଗାଡ଼ି ଭିତରେ ନିଜକୁ ଲୁଚାଇ ନେଲି। ତା'ପରେ ଦେଖିଲି ବୁଢ଼ୀ ପୁରୋହିତଙ୍କୁ ଡାକି ଶୀଘ୍ର କାମ ଆରମ୍ଭ

କରାଇବାର ବନ୍ଦୋବସ୍ତ କଲେ। ମନ୍ଦିରରେ ତାଙ୍କ ପରିଚୟଟା ସମସ୍ତଙ୍କ ସହ ବେଶ ଘନିଷ୍ଠ ଜଣା ପଡୁଥିଲା। । ମୋତେ ଖୋଜା ପଡ଼ିଲା, ବାଧହୋଇ ଆସିଲି।

ବୁଢ଼ୀ ମୋ ମା'ର ମାଉସୀ ଲେଖା ହେବ। ବୟସ ପଞ୍ଚଷଠି ଉପରେ ହବ। ଦାନ୍ତ ନାହିଁ ଜମା, କିନ୍ତୁ ମୁହଁରେ ଏକ ପ୍ରକାର ଶାନ୍ତ ସୁନ୍ଦର ଭାବ। ବୁଢ଼ୀ ନିଶ୍ଚେ ଅତୀତରେ ସୁନ୍ଦରୀଟିଏ ଥିବ। ଲୁଗାପଟା ବେଶ୍ ପରିଷ୍କାର- ଦାମୀ ନ ହେଲେ ବି ପିନ୍ଧିବାର ପରିପାଟୀରୁ ଆଭିଜାତ୍ୟ ଅନୁମାନ କରି ହେଉଥିଲା। ମୋତେ ବୁଢ଼ୀ ତା କୋଳକୁ କୁଣ୍ଢାଇ ନେଇ କହିଲା- ''ଏତେ ଦିନକେ ସବୁ ଆସିଚ, ଖାଇଦେଇ ଯିବ।'' ମୁଁ ଆଶ୍ଚର୍ଯ୍ୟ ହୋଇ ମା ମୁହଁକୁ ଚାହିଁଲି। ମୋତେ ଆକଟ କରି ବୁଢ଼ୀ କହିଲା ''ମା'କୁ ଚାହୁଁଚୁ କ'ଣ?'' ଏଇ ସେଇଠି ଦେଖାଯାଉଛି ଆମ ଘର, ମୁଁ ଗଲି ଆଇଲି।'' କହି ଯେଉଁଆଡ଼କୁ ଆଙ୍ଗୁଠି ଦେଖାଇଲେ ପ୍ରାୟ ଦୁଇ କିଲୋମିଟର ହେବ। ଯେତେ ନାଇଁ ନାଇଁ କଲେ ବି ବୁଢ଼ୀ ଉଠିପଡ଼ି ଧାଇଁବା ଆରମ୍ଭ କଲା। ସେତେବେଳକୁ ଗୋଟାଏ ବାଜିଲାଣି।

ପ୍ରାୟ ଦୁଇଟା ବେଳକୁ ଶ୍ରାଦ୍ଧ କାମ ଶେଷ ହେଲା। ଆମେ ଆସି ମନ୍ଦିର ସାମ୍ନା ଗଛ ଛାଇରେ ଚଉତରା ଉପରେ ବସି ଅପେକ୍ଷା କଲୁ। ଭୋକରେ ସମସ୍ତେ ଆଉଟୁ ପାଉଟୁ। ହୋଟେଲରେ ଖାଇବା ପ୍ରୋଗ୍ରାମ କରିଥିଲୁ ଆମେ- ହେଲେ ବୁଢ଼ୀ ଓ ପୁରୋହିତ ମନା କରିଦେଇଗଲେ ପିଆଜ ରସୁଣ ନ ଖାଇ ଅରୁଆ ଖାଇବାପାଇଁ। ଏବେ କ'ଣ କରାଯିବ? ବିସ୍କୁଟ ଖିଆ ହେଲା, ବୋତଲରୁ ପାଣିପିଆ ହେଲା। ତିନିଟା ବାଜିବାକୁ ବସିଲା। ମୋର ଧୈର୍ଯ୍ୟ ଆଉ ନ ଥାଏ। ମା ବିଚାରୀ ବଡ଼ ଅସୁବିଧାରେ ପଡ଼ିଚି- ଯେତେହେଲେ ତା' ବାପଘର ଲୋକ। ହେଲେ ବାପାଙ୍କୁ ମଝିରେ ସେ କହୁଥିଲା- ''କୁଆଡ଼େ ଏ ବୁଢ଼ୀର ଆଉ ତା' ବୋହୂର ପଟୁ ନାହିଁ ଜମା। ବୀର ଭାଇ ଗତ ଥର ଆସିଥିଲେ କହୁଥିଲେ। ଆଜି ଅସମୟରେ ବୁଢ଼ୀ ଏତେଗୁଡ଼ାଏ ଲୋକର ଖାଇବା ବ୍ୟବସ୍ଥା କରିବାକୁ କହିବା ବେଳକୁ ବୋହୂ ସାଙ୍ଗରେ ପୁଣି କଳି ଆରମ୍ଭ ହୋଇଯାଇଥିବ।'' କିଛି ସମୟ ଏପଟ ସେପଟ ହୋଇ ଦୂରରୁ ସେ ଗାଁ ଆଡୁ କାହାରିକୁ ଆସିବାର ନ ଦେଖି ମୁଁ ବାପା ମା'ଙ୍କୁ ବାଧ କଲି ଫେରି ଯିବାକୁ। ଥରେ ଦି'ଥର ମୋ କଥାକୁ କାଟି ଦେବା ପରେ ଶେଷକୁ ବାଧ ହୋଇ ଗାଡ଼ିରେ ବସିଲେ। ଆମେ ଫେରିଲୁ।

ଫେରିଲୁ ସିନା, ହେଲେ ରାସ୍ତା ସାରା ମୁଁ ମନେ ମନେ ଭୀଷଣ ଦୋଷୀ ଅନୁଭବ କଲି। ବୁଢ଼ୀ ହୁଏତ ସତରେ କଳି କରିଥିବ ପୁଅ ବୋହୂଙ୍କସହ। ଶେଷରେ ପୁଅ ବୋହୂ ମଧ୍ୟ ଅନୁଭବ କରିଥିବେ, ଏତେ ବର୍ଷ ପରେ ଯେତେବେଳେ ବନ୍ଧୁବାନ୍ଧବଙ୍କୁ ନିମନ୍ତ୍ରଣ କରିଦିଆଗଲାଣି, ବ୍ୟବସ୍ଥା କରିବାକୁ ହେବ। ତା'ପରେ ହୁଏତ ନିଜର ବଡ଼ିମା ଦେଖାଇବା ପାଇଁ ଘର ସଜା, ଖିଆପିଆର ବ୍ୟବସ୍ଥା କରିବାକୁ ଲାଗି ପଡ଼ିଥିବ ବୋହୂ, ଶାଶୁ ଉପରେ ଗରଗର ହୋଇ। ଆଉ ଶେଷକୁ ଆସି ଦେଖିଥିବେ କୁଣିଆ ନାହାନ୍ତି। ବିଚାରୀ ବୁଢ଼ୀ!

ଭୀଷଣ ଅନୁତପ୍ତ ହେଲି ମନେ ମନେ। ଆଜି ପର୍ଯ୍ୟନ୍ତ ଏତେ ବର୍ଷ ଧରି ସେଇ ଗୋଟେ କଥା ମନେପଡ଼ିଲେ ଭୀଷଣ ଖରାପ ଲାଗେ ମନଟା। ଆଜି ସେଇ ମାଟିରେ ପାଦ ଦେଉ ଦେଉ ସେଇ ବୁଢ଼ୀଟିର ଚିତ୍ର ଆସି ମନ ଭିତରେ ପୁଣି ଠିଆ ହୋଇଗଲା। ବୁଢ଼ୀର ଖୋଜିଲା ଖୋଜିଲା ମୁହଁ- ମୋ ମନଟାକୁ ଉଦାସ କରି ପକାଇଲା। ଆଜି ସାଙ୍ଗରେ ସ୍ତ୍ରୀ ଓ ବାପା ମା ନାହାନ୍ତି। ଆଜି ଆମେ ଆସିଥିଲୁ ଆଗପରି ଗୟା ପିଣ୍ଡଦାନ ପାଇଁ ବିରଜାକ୍ଷେତ୍ରରେ ମା'ର ଶ୍ରାଦ୍ଧ କରିବାକୁ। ବାପାଙ୍କ ମନରେ ଅନ୍ୟ ଏକ ପ୍ରକାର ସ୍ମୃତି ହୁଏତ ତାଙ୍କୁ ବିମର୍ଷ କରି ରଖିଥିଲା। ଏଇ ମାଟିରେ ଗତଥର ସ୍ତ୍ରୀଙ୍କୁ ଧରି ଆସିଥିଲେ, ଆଉ ଆଜି ଆସିଛନ୍ତି ସେଇ ସ୍ତ୍ରୀ ପାଇଁ ଶ୍ରାଦ୍ଧ କରିବାକୁ।

ବାବାଙ୍କୁ ଗାଡ଼ିରେ ବସିବାକୁ କହି ମୁଁ ସ୍ତ୍ରୀଙ୍କୁ ଧରି ମନ୍ଦିରଆଡ଼କୁ ଆଗେଇ ଆସିଲି। ମନ୍ଦିର ପରିବେଶ ବହୁତ ପରିବର୍ତ୍ତନ ହୋଇଯାଇଚି। ସେଇ ପୁରୁଣା ଗଛ ସବୁ ଆଉ ନାହିଁ। ପୂରା ବଦଳି ଯାଇଛି। ବଗିଚା ଆଉ ଫୁଲ ଦେଖି ମୋ ସ୍ତ୍ରୀ ବେଶ୍ ଉତ୍ଫୁଲ୍ଲ ହୋଇ ସେପଟେ ଆଗେଇ ଯାଉ ଯାଉ ହଠାତ୍ ଅଟକି ଗଲେ। ମୁଁ ଚାହିଁ ଦେଖିଲି ସତେ ଯେପରି ତାଙ୍କ ମୁହଁରେ ରକ୍ତ ନାହିଁ। ତାଙ୍କ ଦୃଷ୍ଟି ପଥକୁ ଚାହିଁ ଦେଖିଲି ମନ୍ଦିର ବାଁପଟ ଦ୍ୱାର ଦେଇ ହାତରେ ପିଣ୍ଡଧରି ବାହାରି ଆସୁଥିବା ନାରୀଟିକୁ ସେ ଚାହିଁଛନ୍ତି। ମୁଁ କିଛି ବୁଝିପାରିଲି ନାହିଁ। ତାଙ୍କ ହାତଟାଣି ମନ୍ଦିର ଦ୍ୱାରଆଡ଼କୁ ନେଇଗଲି। ସେ ସେଇ ନାରୀଟି ଆଡ଼କୁ ଚାହିଁ ଚାହିଁ ଆସି ପାହାଚ ଉପରେ ବସିପଡ଼ିଲେ। ଆଗେଇ ଆସୁଥିବା ପୁରୋହିତଙ୍କୁ ଶ୍ରାଦ୍ଧ ବ୍ୟବସ୍ଥା କରିବାକୁ କହି ମୁଁ ତାଙ୍କୁ ପଚାରିଲି କ'ଣ ହେଲା ?

ସେ ସେଇ ଆଡ଼କୁ ଚାହିଁ କହିଲେ- ''ବୁଢ଼ୀକୁ ଚିହ୍ନି ପାରୁନ ?'' ମୁଁ ଚେଷ୍ଟା କରି ମଧ୍ୟ ଚିହ୍ନି ପାରୁ ନ ଥିଲି। ସେ କହିଲେ- ''ମନେ ନାହିଁ ସେଇ କଂଗ୍ରେସ ଅଫିସ୍‌ରେ କାମ କରୁଥିଲା ବୁଢ଼ା। ଯିଏ ତମ ପଖକୁ ବାରମ୍ବାର ଆସି ଏଣୁ ତେଣୁ ଅଭାବ ଅସୁବିଧା କହି ପଇସା ନେଉଥିଲା ?'' ଠିକ୍ ମନେ ପଡ଼ିଗଲା। କିଛି ବର୍ଷ ତଳେ ମୁଁ କଂଗ୍ରେସ ଭବନ ନିର୍ମାଣ କରିବାରେ ବୈଷୟିକ ସାହାଯ୍ୟ କରିଥିଲି। ପ୍ରାୟ ପ୍ରତ୍ୟେକ ଦିନ କାମ ଦେଖିବାକୁ ଯାଉଥିଲି। ସେତେବେଳେ ଲୋକଟି କଂଗ୍ରେସ ଅଫିସର ହେଡ୍‌କ୍ଲର୍କ ପରି ସବୁ କାମ କରୁଥିଲା। ମୁଖ୍ୟମନ୍ତ୍ରୀଙ୍କଠାରୁ ଆରମ୍ଭ କରି ଜିଲ୍ଲା କଂଗ୍ରେସ କର୍ମୀ ପର୍ଯ୍ୟନ୍ତ ସମସ୍ତେ ତାକୁଇ ଡାକନ୍ତି। ବୁଢ଼ା ହେଲା ସେ, ତାକୁ ବୋଧହୁଏ ଆଉ ଅଫିସରେ କେହି ପଚାରିଲେ ନାହିଁ। ନୂଆ ଯୁବନେତା ସବୁ ବାହାରିଲେ। ପରେ ବୁଢ଼ାକୁ ରାସ୍ତାରେ ଦେଖେ। ଅଭାବ ଅସୁବିଧା କହି, କିଛି ନିଏ। କଂଗ୍ରେସ ଅଫିସ କାମରୁ ରିଟାୟାର କଲାଣି- ପିଲାଏ ପଚାରୁ ନାହାନ୍ତି ଇତ୍ୟାଦି ଇତ୍ୟାଦି। ଧୀରେ ଧୀରେ ଘରକୁ ଆସିବା ଆରମ୍ଭ ହେଲା। ଆମର ମଧ୍ୟ କିଛି ଦିନପରେ ତାକୁ ଦେଖିଲେ ବିରକ୍ତ ଲାଗିବା ଆରମ୍ଭ ହେଲା। ହେଲେ କଂଗ୍ରେସ ଅଫିସରେ ଚାକିରିଥିବା ଅବସ୍ଥାରେ ତାର ଅବସ୍ଥାକୁ ବର୍ତ୍ତମାନ ଅବସ୍ଥା ସହ ତୁଳନା

କଲାବେଳକୁ ଦୟା ଲାଗେ । ଏଣୁ ଯାହା କିଛି ଦେଇ ତାକୁ ବିଦା କରି ଦିଆଯାଏ । ହଠାତ୍ କିଛିଦିନ ତା ଆସିବା ବନ୍ଦ ହୋଇଗଲା । ଭାବିଲୁ ଚାଲିଗଲା କି ବୁଢ଼ା ? ନାଁ; ଦିନେ ଦେଖିବା ବେଳକୁ ଗୋଟିଏ ରିକ୍ସାରେ ସେ ଓ ତା' ସହ ଓଢ଼ଣା ଦେଇ ବୁଢ଼ୀଟିଏ ଆସି ଦ୍ୱାର ପାଖରେ ପହଞ୍ଚିଲେ । ବୁଢ଼ା ସହ ସ୍ତ୍ରୀକୁ ଦେଖିବା ଏଇ ପ୍ରଥମ । ବୁଢ଼ା ଗୋଡ଼ରେ ପ୍ଲାଷ୍ଟର, ବୁଢ଼ୀ ଓହ୍ଲାଇ ଆସି ଗେଟ୍ ପାଖରେ ଗୋଟେ କଡ଼କୁ ଓଢ଼ଣାକୁ ଟାଣି ଠିଆ ହେଲେ । ସ୍ତ୍ରୀ ବଗିଚା କାମରେ ବ୍ୟସ୍ତ ଥିଲେ; ବୁଢ଼ୀଟିକୁ ଦେଖି ଆଗେଇ ଯାଇ ଯାହା ଶୁଣିଲେ, ବ୍ୟସ୍ତ ହୋଇ ନେଇ ଶହେଟଙ୍କିଆ ନୋଟ ଖଣ୍ଡେ ଦେଇ ଆସିଲେ । ମୁଁ ଉପରୁ ଥାଇ ଦେଖୁଥିଲି । ଖୁସି ଲାଗିଲା ।

ତା'ପରେ ବୁଢ଼ୀ ବୁଢ଼ାକୁ ଧରି ଆଉ ଦୁଇ ଥର ତିନି ଥର ଆସିଥିଲେ ଓ ଅତି କୁଣ୍ଠାର ସହ ନିଜର ଅସୁବିଧା କଥା କହି ଆହୁରି କୁଣ୍ଠାର ସହ ପଚାଶ ଟଙ୍କା ଲେଖାଏଁ ନେଇ ଯାଇଥିଲେ । ତା'ପରେ ପୁଣି ଯେତେବେଳେ ଆସିଲେ, କାନ୍ଦିବା ଆରମ୍ଭ କରି କହିଲେ- ''ଏଇଟା ଶେଷ, ଆଉ ଆସିବୁ ନାହିଁ, ଗାଁକୁ ପଳାଇବୁ ।'' ଏ କଥାରେ ଏଇଟା ଶେଷ ବୋଲି ଭାବି ଆମେ ତାଙ୍କ ହାତରେ ଦୁଇଟା ଶହେ ଟଙ୍କିଆ ନୋଟ ଦେଇଥିଲୁ ।

ପୁଣି ଥରେ, ମୁଁ ନ ଥିବାବେଳେ ବୁଢ଼ୀ ବୁଢ଼ାକୁ ଧରି ଆସିଥିଲେ । ବୁଢ଼ୀକୁ ଗେଟ ପାଖରେ ଦେଖି ସ୍ତ୍ରୀ ଟିକିଏ ଚଢ଼ା ଗଳାରେ ପଚାରିଥିଲେ, 'କ'ଣ ଗାଁକୁ ପଳାଇଥିଲେ ପରା, ମିଛ ?' ବୁଢ଼ୀ ନୀରବ ଥିଲେ । ତଥାପି ସ୍ତ୍ରୀ ଘରକୁ ପଶିଗଲେ, କିଛି ଦେଇ ବିଦା କରି ଦେବାକୁ । ପଚାଶ ଟଙ୍କା ନେଇ ଗଲାବେଳକୁ ବୁଢ଼ୀ ନ ଥିଲେ କି ରିକ୍ସା ନ ଥିଲା । ଚାକର ପିଲାକୁ ଏପଟ ସେପଟ ପଠାଇ ଖୋଜି ଖୋଜି ମଧ୍ୟ ରିକ୍ସାଟାକୁ ଠାବ କରିପାରି ନ ଥିଲେ । ତାଙ୍କ ମନଟା ସେଇଦିନୁ କୁଆଡ଼େ ବୁଢ଼ୀଟାପାଇଁ ବ୍ୟସ୍ତ ଥିଲା ।

ଆଜି ବୁଢ଼ାକୁ ଦେଖିଲେ ଏଇଠି, ଯେଉଁଠି କିଛି ବର୍ଷ ତଳେ ଆଉ ଗୋଟେ ବୁଢ଼ୀ ସ୍ମୃତି ମୋ ଅନ୍ତରଟାକୁ ଏବେ ବି ବିମର୍ଷ କରିଦିଏ । ଆମେ ଦୁହେଁ ଶ୍ରାଦ୍ଧ କାମ ସାରି ଗାଡ଼ିରେ ବସିବାବେଳକୁ ଆମ ମନ ବେଶ୍ ଭାରାକ୍ରାନ୍ତ । ବାପା ଭାବୁଥିଲେ ମା'ର ଶ୍ରାଦ୍ଧକରି ପିଲାଏ ସେଇ ସ୍ମୃତିରେ ବୋଧହୁଏ ଭାଙ୍ଗି ପଡ଼ିଚନ୍ତି ।

ସତରେ ଆମେ ଦିହେଁ ମୋ ମାଆର ଶ୍ରାଦ୍ଧରେ ମା ସ୍ମିତି ସହ ଆଉ ଦୁଇ ଜଣ ବୁଢ଼ୀମାଙ୍କୁ ମଧ୍ୟ ମନେ ପକାଇ ବିମର୍ଷ ହୋଇଯାଇଥିଲୁ ।



# ନଈର ନିମନ୍ତ୍ରଣ

ସୁଦୀପ୍ତ ମିଶ୍ରଙ୍କୁ ମୁଁ ବହୁଦିନରୁ ଜାଣିଥିଲି। ଆମେ ସାଙ୍ଗ ହୋଇ ଜାମସେଦପୁର ସେଣ୍ଟ ଜାଭିଅର୍ସରୁ ଲେବର ରିଲେସନ୍‌ରେ ଡିପ୍ଲୋମା କରିଥିଲୁ। ମୁଁ ଅବଶ୍ୟ ରେଭେନ୍ସାରୁ ବି.ଏ. କରି ଯାଇଥିଲି। ସେତେବେଳେ ମହତାବଙ୍କ ପଦେ କଥାରେ ମୋ' ପାଇଁ ସେଣ୍ଟ ଜାଭିଆର୍ସରେ ସିଟ୍‌ର ବ୍ୟବସ୍ଥା କରି ଦେଇଥିଲେ ଟାଟା କମ୍ପାନୀର ଏମ୍.ଡି. ପାଣ୍ଡେ ସାହେବ। ଆଉ ସୁଦୀପ୍ତ ସେଇଠି ଟାଟାର ପିଲା। ସ୍କୁଲ କଲେଜ ସବୁ ସେଇଠି। ବାପାଙ୍କ ଅବସର ପରେ ଉତ୍ତରାଧିକାରୀକୁ ଟାଟା କମ୍ପାନୀରେ ଚାକିରି ମିଳେ। ସେ ଦୁଇ ବର୍ଷ ଲେଣ୍ଡ ଡିପାର୍ଟମେଣ୍ଟରେ ଚାକିରି କରି କମ୍ପାନୀ ତରଫରୁ ରେକମେଣ୍ଡେସନ ପାଇ ଆସିଥିଲା ଲେବର ରିଲେସନ ପଢ଼ିବାକୁ। ବେଶ୍ ବନ୍ଧୁ ହୋଇଗଲୁ- ଘନିଷ୍ଠ କହିଲେ ଚଳେ। ଅବଶ୍ୟ ଆମର ଆଉ ଏକ ସମ୍ପର୍କର ସୂତ୍ର ମଧ୍ୟ ଥିଲା- ସେଇଟା ହେଲା ଆମ ଦୁଇ ଜଣଙ୍କ ଘର ଏକା ଅଞ୍ଚଳରେ। ଯାଜପୁର ବରି ଅଞ୍ଚଳରେ ତାଙ୍କ ଘର ଗଣ୍ଡକୁଳ, ଖରସ୍ରୋତା ନଦୀ ଉପରେ, ଆଉ ଆମର ବରି।

ମୁଁ ଅବଶ୍ୟ ଗାଁରୁ ପ୍ରାଇମେରୀ ପାଠ ପଢ଼ି କଟକ ଆସିଥିଲି, ମାମୁଁଘରେ ରହି ହାଇସ୍କୁଲ ପଢ଼ିବାକୁ। ତାର କିନ୍ତୁ ଜନ୍ମ ସିନା ଗଣ୍ଡକୁଳରେ ହେଲେ ପଢ଼ା ସବୁ ସେଇ ଟାଟାନଗରରେ। ମୋ ବାପା କହନ୍ତି ସୁଦୀପ୍ତ ବାପାଙ୍କ କଥା। ରମାନାଥ ପଣ୍ଡିତ ହିସାବରେ ସମସ୍ତେ ତାଙ୍କୁ ଜାଣନ୍ତି। ପଣ୍ଡିତ କହିଲେ ଯେମିତି ବୁଝାଯାଏ ସେମିତି କିଛି ବଡ଼ ପଣ୍ଡିତ ନୁହେଁ। କିନ୍ତୁ ସେ ସଂସ୍କୃତ ଟୋଲ୍‌ରେ କିଛିଦିନ ପଢ଼ିଥିଲେ। କଥା କଥାକେ ଶ୍ଳୋକ ଗାଇ ପାରନ୍ତି। ଜମିବାଡ଼ି, ନଡ଼ିଆ ବଗିଚା ପ୍ରଚୁର, ଏଣୁ ମଠ ମନ୍ଦିରରେ ମନ ବେଶୀ। ସେଇଥିପାଇଁ

ସମସ୍ତଙ୍କ ମୁହଁରେ ରମାନାଥ ପଣ୍ଡିତ ବୋଲି ଖ୍ୟାତ। ବାପା ରମା ପଣ୍ଡିତଙ୍କ କଥା କହିଲାବେଳେ ମା ସବୁବେଳେ ଚୁ ଚୁ କରି ଆଖିରୁ ଲୁହ ବୁହାନ୍ତି ବୋଲି ପଣ୍ଡିତଙ୍କ କଥା ମୋର ବେଶ୍ ମନେଥିଲା। ଟାଟାନଗର ଆସି ତାଙ୍କ ପୁଅ ସୁଦୀପ୍ତ ସହ ବୋଧହୁଏ ସେଇଥିପାଇଁ ଘନିଷ୍ଠତା ଜମିଗଲା।

ମା'ଙ୍କର ଦୁଃଖ କରିବାର ଗୋଟେ ବିଶେଷ କାରଣ ଅଛି। ରମା ପଣ୍ଡିତଙ୍କ ଘର ନଦୀଦାଢ଼ରେ। ବାସନ ଧୋଇବାପାଇଁ ମଧ୍ଯ ସେମାନେ ନଦୀଘାଟକୁ ଓହ୍ଲାଇ ପଡ଼ନ୍ତି। ପାଣି ବୋହିବା ଦରକାର ପଡ଼େ ନାହିଁ। କିନ୍ତୁ ସେଇ ନଦୀ ତାଙ୍କ ଜୀବନରେ ଏକ ବିରାଟ ବିପତ୍ତି ହୋଇ ଛିଡ଼ା ହେଲା। ବନ୍ୟା କଥା ତ ଛାଡ଼ ଖୁବ୍ ବଡ଼ ବନ୍ୟାରେ ମଧ୍ୟ ତାଙ୍କ ବାରଣ୍ଡାକୁ ପାଣି ଛୁଏଁ ନାହିଁ- ଏଣୁ ସେଇଟା ବରି ଅଞ୍ଚଳପାଇଁ କିଛି ନୂଆ ନୁହେଁ। ହେଲେ ଗୋଟିକ ପରେ ଗୋଟେ ଦିଓଟି ପୁଅ ଦୁଇରୁ ତିନି ବର୍ଷ ବୟସରେ ସେଇ ନଦୀରେ ବୁଡ଼ି ମଲେ। ଏହାଠାରୁ ଦାରୁଣ ଦୁଃଖ ଆଉ କ'ଣ ହୋଇପାରେ।

ବାପା ବଡ଼ବାପା ହୋଇ ଚାରି ଭାଇରେ ରମା ପଣ୍ଡିତଙ୍କ ବାପା ଗୋଟିଏ ପୁଅ ଆଉ ଦିଓଟି ଝିଅ। ସେଇ ପିଇସୀ ଦୁହେଁ ଟାଟାରେ। ତାଙ୍କ ସ୍ୱାମୀ ଦି'ଜଣ ମଧ୍ୟ କକାପୁଅ ବଡ଼ବାପା ପୁଅ ଭାଇ ଭାଇ। ତାଙ୍କ ଗାଁର ସୁଧାକର ମହାନ୍ତି ଟାଟା କମ୍ପାନୀର ବଡ଼ ଅଫିସର୍ ଆଉ ତାଙ୍କରି ଦୟାରୁ ପିଇସା ଦୁଇ ଜଣ ସେଇଠି ଟାଟା କମ୍ପାନୀରେ ଚାକିରିରେ ଲାଗି ଯାଇଥିଲେ। ସେମାନେ ଦି'ଭାଇ ଭାରି ପାରିବାର ଲୋକ। ସେଠି ପରସୁଡ଼ି ଅଞ୍ଚଳରେ ଜାଗା କିଣି ଘର କରି ରହି ଯାଇଥିଲେ, ଗାଁରୁ ଜମିବାଡ଼ି ସବୁ ବିକାବିକି କରି। ତାଙ୍କପାଇଁ ଏବେ ଗାଁ କହିଲେ ଗୋଟିଏ ବୋଲି ଆଶ୍ରୟ; ଏଇ ରମା ପଣ୍ଡିତଙ୍କ ଘର, ଯେଉଁଠି ଆସି କେବେ କେବେ ଆଠ ଦଶ ଦିନ ରହି ବୁଲି ଯାଆନ୍ତି।

ଏଥର ଅଡ଼ି ବସିଲେ ଦୁଇ ପିଇସା। ତାଙ୍କର ସବୁ ଚାକିରିରୁ ଅବସର ନେବା ବେଳ ହେଲା। ତାଙ୍କ ପିଲାଏ ତ ଗଲେଣି। 'ତୁ ରମା ପିଲାପିଲି ନେଇ ଚାଲିଆ ସେଇଠି ରହି ପୁଅକୁ ମଣିଷ କରିବୁ।' ତୃତୀୟ ପୁଅ ଜନ୍ମ ହେବା ପରେ ରମା ପଣ୍ଡିତେ ସତରେ ପ୍ରତି ମୁହୂର୍ତ୍ତରେ ବ୍ୟସ୍ତ ରହୁଥିଲେ। ମଠ ମନ୍ଦିର ଯିବା ପ୍ରାୟ ବନ୍ଦ ହୋଇ ଯାଇଥିଲା। ଅଭ୍ୟାସ କରୁଥିଲେ ଘରେ ରହିବାକୁ। ପୁଅ ଗୁରୁଣ୍ଡିବା ବେଳ ହେଲାବେଳକୁ ବିପଦ। ପିଇସା ପିଇସୀଙ୍କ କଥା ମନକୁ ପାଇଗଲା। ଯାହା କାମ କରିବାକୁ ପଡୁ ପଛେ ଏଠି ପୁଅକୁ ରଖି ହେବ ନାହିଁ। ସ୍ତ୍ରୀଙ୍କ ଆପତ୍ତି ସତ୍ତ୍ୱେ ସେ ବାହାରିଲେ।

ଚାକିରିଟେ ଜୁଟାଇବାକୁ ଦଶଟା ଦିନ ଲାଗିଲା ନାହିଁ। ହେଲେ ରମା ପଣ୍ଡିତଙ୍କ ମନକୁ ପାଇଲା ନାହିଁ। ଗାଁରେ ସବୁଠି ଓଳଗି ପାଇଲାବେଳକୁ ଏଠି ଉପରକୁ ଅଧଡଜନେ ଲୋକଙ୍କୁ ନମସ୍କାର। ତା' ସାଙ୍ଗକୁ ପରିଶ୍ରମ ବେଶ୍। ପାଠ ତ ସଂସ୍କୃତ, ଏଠି କଣ ଚଳେ? ଖାଲି ନାଁ ଲେଖି ପାରିବା ଅବସ୍ଥା, ଏଣୁ ଆଉ ଅଧିକ କ'ଣ ଚାକିରି ବା

ମିଳିବ। ହେଲେ ପୁଅପାଇଁ ସବୁ ଆଖି ବୁଜିଦେଲେ ରମା ପଣ୍ଡିତେ। ମନ ପ୍ରାଣ ଦେଇ ନିଜ କାମରେ ଲାଗିପଡ଼ିଲେ। ଓଭର୍ ଟାଇମ୍ ଇତ୍ୟାଦି ଇତ୍ୟାଦି ଯୋଗୁ ପଇସାର କମି ନାହିଁ, ତା' ସାଙ୍ଗକୁ ପ୍ରତି ମାସ ତାଙ୍କ ସ୍ତ୍ରୀ ଗାଁକୁ ଯିବା ଆସିବା ଆରମ୍ଭ କରିଦେଲେ ଯେ, ଚାଉଳ, ଡାଲି, ନଡ଼ିଆ, ଚିନାବାଦାମ ସବୁ ଆସିଲା। ଧୀରେ ଧୀରେ ତାଙ୍କ ସ୍ତ୍ରୀ ଗାଁରେ ବେଶୀଦିନ ରହିବା ଆରମ୍ଭ କଲେ ଆଉ ପଣ୍ଡିତେ ପୁଅକୁ ନେଇ ସହରରେ।

ସୁଦୀପ୍ତ ମଧ୍ୟ ବାପା ମୁହଁକୁ ଚାହିଁ ଭଲ ପଢ଼ାପଢ଼ି କଲା। ପ୍ରଥମ ଶ୍ରେଣୀରେ ମେଟ୍ରିକ, ତା'ପରେ ପାଟନା ୟୁନିଭରସିଟିରୁ ଆଇ.ଏ. ବି.ଏ. ସବୁ ପାସ୍ କଲା ଆଉ ସେଇ ଟାଟା କମ୍ପାନୀ ଚାକିରିରେ ପଶିଲା। ପଣ୍ଡିତଙ୍କ ମନ ସେଦିନଠୁ ଘରମୁହାଁ ଧରିଲା। କହି ବୁଲିଲେ, ଏଥର ଗାଁକୁ ପଳାଇଯିବେ- ଖାଲି ପୁଅକୁ ଦି'ହାତ କରିଦେଲେ ଏ କାଳିମାଟିରୁ ତ୍ରାହି।

ସତରେ ବି ସେଇଆ ହେଲା। ସୁଦୀପ୍ତ କଲେଜରେ ପଢ଼ିବା ଦିନଠୁ କାହାକୁ ବାଛିଥିଲା ବୋଲି ସେ ଜାଣିଥିଲେ। ସିଧା ମୁହଁ ଖୋଲି ପୁଅକୁ ମନ କଥା ପଚାରିଦେଲେ ଆଉ ଠିକଣା ନେଇ କନ୍ୟା ବାପା ଘରକୁ ଚାଲିଲେ ଶୁଭଦିନ ଦେଖି। ବାସ୍ ତା'ପରେ ଯାହାକୁ କହନ୍ତି 'ଚଟ୍ ମଙ୍ଗନି ପଟ୍ ବାହା'। ଗୋଟିଏ ଜିଦ୍ ଥିଲା ତାଙ୍କର- ବାହାହୋଇ ବୋହୂ ଆସିବ ଗଣ୍ଡକୂଳ। କାହାରି ଆପତ୍ତି ନ ଥିଲା। ସେ କେବଳ ସୁଦୀପ୍ତକୁ ଗାଁକୁ ନେଉ ନ ଥିଲେ, ଗୋଟେ ଅନ୍ଧବିଶ୍ୱାସକୁ ଡରି। ହେଲେ ବିବାହ ପରେ ସୁଦୀପ୍ତ ଗାଁକୁ ଯାଇଥିଲା ବୋହୂକୁ ନେଇ।

ଯା'ଭିତରେ ମୁଁ ଟାଟା କମ୍ପାନୀର ମାଇନ୍ସ ଏରିଆରେ ପୋଷ୍ଟିଂ ପାଇ ଟାଟାରୁ ବାହାରକୁ ଚାଲି ଯାଇଥିଲି, ଆଉ ସୁଦୀପ୍ତ ସେଇଠି ହେଡ୍ ଅଫିସ୍‌ରେ ଥିଲା। ଗୁଡ଼ାଏ ବର୍ଷ ପରେ ପୁଣି ମୁଁ ଏବେ ଚାରି ବର୍ଷ ହେଲା ଏଠିକୁ ଆସିବା ଭିତରେ ସୁଦୀପ୍ତ ଘର ସହ ବନ୍ଧୁତ୍ୱ ପୁଣି ଜମି ଉଠିଚି। ଯା'ଭିତରେ ମାଉସୀ ଆରପୁରକୁ ଗଲେଣି। ମଉସା କିନ୍ତୁ ଗାଁ ଛାଡ଼ି ଆସିବାକୁ ନାରାଜ। ଗାଁରେ ତାଙ୍କ ଦେଖାଶୁଣା କରିବାକୁ କେହି ନାହିଁ। ହେଲେ ଘରକୁ ଲାଗି ବାଡ଼ି ବଗିଚା ସବୁ। ସେଠି ପୁରୁଷ ପୁରୁଷ ଧରି ମୂଲିଆ ହଳିଆ ଅଛନ୍ତି, ଏଣୁ ଅସୁବିଧା କିଛି ନାହିଁ ବୋଲି କହି ସେ ଆଉ ଏ କାଳିମାଟି ମୁହଁ ଧରନ୍ତି ନାହିଁ।

ସେଦିନ ହଠାତ୍ ସୁଦୀପ୍ତ ବ୍ୟସ୍ତ ହୋଇ ରାତି ଦଶଟାରେ ଫୋନ୍‌କଲା। ମଉସାଙ୍କ ଦେହ ଖରାପ। ଏଇ ମୁହୂର୍ତ୍ତରେ ଯିବାପାଇଁ ଫୋନ୍ ଆସିଚି। ଗାଁରୁ କିଏ ଆସି ଯାଜପୁରଠୁ ଫୋନ୍ କରିଚନ୍ତି। ତାର ଗାଡ଼ି ନାହିଁ। ଅଗତ୍ୟା ମୋତେ ଲଗାଇଲା ସାଙ୍ଗ ହୋଇ ଯିବାପାଇଁ। ମୁଁ ଏ ଅବସ୍ଥାରେ ନାହିଁ କରିପାରିଲି ନାହିଁ। ମୋ ଗାଡ଼ି ସିନା ଅଛି, ଡ୍ରାଇଭର ନାହିଁ। ମୁଁ ଟ୍ୟାକ୍ସି ଗୋଟେ ବ୍ୟବସ୍ଥା କରି ତା' ଘରେ ପହଞ୍ଚିବାବେଳକୁ ସେମାନେ ପୁଅ ଝିଅ ଦି'ଜଣକୁ ଧରି ଦାଣ୍ଡ ବାରଣ୍ଡାରେ।

ସଙ୍ଗେ ସଙ୍ଗେ ବାହାରିପଡ଼ିଲୁ। ସେ ବଡ଼ ଡରି ଯାଇଥାଏ। ରାସ୍ତାଟା ସାରା ଚୁପ୍‌ଚାପ। ସମସ୍ତେ ଶୋଇ ଯାଇଥାନ୍ତି। ମୁଁ ଶୋଇ ପାରୁ ନ ଥାଏ। ରାତିଟାରେ ଡ୍ରାଇଭର ସହ କେହି ଜଣେ ପଦେ ପଦେ କଥା ନ କହିଲେ ସେ ଶୋଇପଡ଼ିବ କେଉଁଠି। ମୁଁ ଅନୁମାନ କଲି ସୁଦୀପ୍ତ ରାସ୍ତା ସାରା ଚାହିଁଥାଏ। ଛ' ସାତ ଘଣ୍ଟାର ରାସ୍ତା। ପ୍ରାୟ ରାତି ଚାରିଟା ବେଳକୁ ଭଦ୍ରକ ପାଖ ଢାବାରେ ଡ୍ରାଇଭର ଗାଡ଼ି ରଖି ଚା'କପେ ଖାଇବାକୁ ଗଲା।

ମୁଁ ସୁଦୀପ୍ତକୁ ଟିକିଏ ଶୋଇଯିବାପାଇଁ କହିବାରୁ ସେ କାନ୍ଦି ପକାଇଲା। ସତରେ ଖବରଟା ଯେପରି ଭାବରେ ଆସିଥିଲା ଗୋଟେ କିଛି ଅଘଟଣ ଘଟିଯାଇଚି, ଏଥିରେ ସନ୍ଦେହ ନାହିଁ। ସବୁଦିନେ ତାର ଦୁଃଖ ଯେ, ବାପା ତାଙ୍କ ପଣ୍ଡିତିଆମି ଛାଡ଼ି ଗୋଟେ ଶ୍ରମିକର କାମ ବାଛି ନେଇଥିଲେ ଏଇ ସୁଦୂର ସହରରେ, କେବଳ ନଦୀ କବଳରୁ ପୁଅକୁ ରକ୍ଷା କରିବାପାଇଁ। ତା' ପ୍ରତିବଦଳରେ ସେ ତାଙ୍କ ଶେଷ ସମୟରେ କିଛି କରିପାରିଲା ନାହିଁ। ମୁଁ ପ୍ରବୋଧନା ଦେଇ ତାକୁ ଟିକିଏ ଶୁଆଇ ପକାଇବାକୁ ଚେଷ୍ଟା କଲି।

ଗାଁରେ ପହଞ୍ଚିବା ବେଳକୁ ସକାଳ ସାଢ଼େ ଛ'ଟା। ଦୂରରୁ ଜାଣିଦେଲୁ ରମା ପଣ୍ଡିତେ ଆଉ ନାହାନ୍ତି। ଗାଡ଼ି ଠିଆ ନ ହେଉଣୁ ଭୋ ଭୋ କାନ୍ଦ। ସମସ୍ତେ ଧାଇଁଗଲେ ଭିତର ଖଣ୍ଡାକୁ। ମୁଁ ଧୀରେ ଧୀରେ ଆସି ବାରଣ୍ଡାରେ ପହଞ୍ଚି ଘଟଣାଟା ଶୁଣିନେଲି। ଗତକାଲି ଓପରଓଳି ସବୁ ଦିନପରି ନଈରେ ଗାଧୋଇବାକୁ ଯାଇ କେମିତି ଗୋଡ଼ ଖସି ଗଣ୍ଡ ଭିତରକୁ ଟାଣି ହୋଇଗଲେ। ଆଖ ପାଖରେ କେହି ନାହିଁ। ତଳଘାଟରୁ କିଏ ଦେଖିପାରି ପାଣିରୁ ଉଠାଇବା ବେଳକୁ ସବୁ ଶେଷ।

ମୁଁ ଭିତରକୁ ଯାଇ ମଉସାଙ୍କ ପାଦରେ ମୁଣ୍ଡ ନୁଆଇଁ ପ୍ରଣାମଟିଏ କଲି। ପାଦ ଦି'ଟାରେ ଏବେ ମଧ ନଦୀ ପାଣି ଲାଗିଥିଲା ପରି ଅନୁଭବ କଲି। ଏଇ ନଦୀରେ ଗୋଟିଏ ପରେ ଗୋଟିଏ ଦୁଇଟି ପିଲାକୁ ବଳିଦେଇ, ଶେଷଟିକୁ ବଞ୍ଚାଇବାକୁ ଯାଇ କ'ଣ ନ କରିଥିଲେ ମଉସା- ଶ୍ରମିକଟିଏ ହୋଇ ଗାଁ ମୋହ ଛାଡ଼ି ଶୁଷ୍କ ସହରରେ କଟାଇ ଦେଇଥିଲେ ଜୀବନଟା। ହେଲେ ଶେଷରେ ସେଇ ନଦୀର ବୋଧହୁଏ ଆହୁରି କିଛି ଦାଉ ରହିଯାଇଥିଲା- ଶେଷରେ ନିଜକୁ ଗ୍ରାସ ଦେଇଦେଲେ ସନ୍ତାନମାନଙ୍କ ଉପରୁ ଅଭିଶାପର ବୋଝ ଖସାଇ ଦେବାପାଇଁ।



# ମୋହ

ଡକ୍ଟର୍ ରାଉତ୍‌ଙ୍କୁ ସହରର ଶିକ୍ଷିତ ସମାଜରେ ନ ଜାଣିଥିବା ଲୋକ ବୋଧହୁଏ କେହି ନ ଥିବେ। ଖାଲି ଏଇ ସହରରେ କାହିଁକି ଓଡ଼ିଶାର ବହୁ ଅଞ୍ଚଳରେ ତାଙ୍କୁ ବହୁ ଲୋକ ଜାଣନ୍ତି। ପ୍ରଥମ କଥା ସେ ଥିଲେ ଜଣେ ଖୁବ୍ ଭଲ ଡାକ୍ତର। ଚାକିରି ଜୀବନରେ ପ୍ରାୟ ପ୍ରତ୍ୟେକ ଜିଲ୍ଲା ବୁଲିଚନ୍ତି। ବାକି ଯେଉଁ ଜିଲ୍ଲା ସବୁ ରହିଯାଇଥିଲା, ଯଥା- କଟକ, ପୁରୀ ଓ ଭୁବନେଶ୍ୱର ଅଞ୍ଚଳ, ତାହା ସିଭିଲ ସର୍ଜନ ହିସାବରେ ଘୂରି ସାରି, ରିଟାୟାର୍ କଲେ। ପ୍ରଥମେ କିଛିଦିନ ତାଙ୍କ ନିଜ ଘର ବଲାଙ୍ଗୀରରେ ପ୍ରାକ୍ଟିସ୍ ଆରମ୍ଭ କଲେ। ତା'ପରେ ହଠାତ୍ ସେଠି ଏତେ ଭଲ ପ୍ରାକ୍ଟିସ୍ ଛାଡ଼ି ଭୁବନେଶ୍ୱର ଆସି ରେଡ଼କ୍ରସ୍‌ର ସେକ୍ରେଟାରୀ ହେଲେ। ଭୁବନେଶ୍ୱରରେ ଚିଫ୍ ମେଡିକାଲ ଅଫିସର ଥିବା ସମୟରୁ ଝୁରୁଥିଲା, ଏଥର ଫେରିଆସିବା ପରେ ଖାଲି ରେଡକ୍ରସ ନୁହେଁ, ବହୁ ଅନୁଷ୍ଠାନ ତାଙ୍କୁ ଆଦରରେ ଲୋଡ଼ିବସିଲା। ତା' ସାଙ୍ଗକୁ ରୋଗୀ ଦେଖା ମଧ୍ୟ ଚାଲିଥିଲା।

ଦେଖିବାକୁ ପତଳା ହୋଇ ଶେତା ଗୋରା ଲୋକଟା, ଯେମିତି ଏବେ ଏବେ କିଛି ଗୋଟେ ରୋଗରୁ ଉଠିଚି। କିନ୍ତୁ ସଦା ହସ ହସ, ତା' ସାଙ୍ଗକୁ ଫୁର୍ତ୍ତି। ରେଡକ୍ରସ ତଥା ବିଭିନ୍ନ ଅନୁଷ୍ଠାନ କାମରେ ନିଜେ ଗାଡ଼ି ଚଲାଇ ଦୁଇଶ କିଲୋମିଟର ଚାଲିଯିବାରେ ଆପତ୍ତି ନାହିଁ। ସେ ଯେଉଁ ୧୯୬୨ ସାଲର ଫିଆଟ୍ ଗାଡ଼ି ଖଣ୍ଡକ, ତାକୁ ସକାଳୁ ନିଜେ ଧୂଆ ପୋଛା କରି ଚକ୍ ଚକ୍ କରି ରଖିଥାଆନ୍ତି ସେ। ଆଉ ଦରକାର ପଡ଼ିଲେ ଛୁଟି ଦିନମାନଙ୍କରେ ରେଞ୍ଚ୍ ସ୍କ୍ରୁଡ୍ରାଇଭର ଧରି ସେ ଗାଡ଼ିତଳେ ଶୋଇଯାଆନ୍ତି, ଆଉ ଯାହା ମରାମତି ଦରକାର ନିଜେ କରି ନିଅନ୍ତି। ଧନ୍ୟ କହିବ ମଣିଷଟାକୁ!

ଘରେ ବି ତାଙ୍କ ସ୍ତ୍ରୀ ଏକ ଲକ୍ଷ୍ମୀ। ସବୁବେଳେ ଲୋକବାକ ଲାଗି ରହିଥାନ୍ତି। କିନ୍ତୁ କେତେବେଳେ କେହି ତାଙ୍କ ଘରୁ କିଛି ନ ଖାଇ ଫେରିବାର କେହି ଶୁଣି ନାହାନ୍ତି। ସିଏ ସେମିତି ପତଳା ହୋଇ ସାବନା ବର୍ଣ୍ଣର କର୍ମଚଞ୍ଚଳ ନାରୀଟିଏ। କେତେବେଳେ ରନ୍ଧାବଢ଼ା ସାରି, ଗୋଟେ ମିନିଟ୍‌ରେ ରେଡ଼ି ହୋଇ ଡକ୍ଟର ରାଉତଙ୍କ ସହ ବାହାରି ପଡ଼ନ୍ତି ସଭା ସମିତିକୁ କି କାହା ନିମନ୍ତ୍ରଣ ରକ୍ଷା କରିବାକୁ ନ ଦେଖିଲେ ବିଶ୍ୱାସ କରିହୁଏ ନାହିଁ। ଘରେ ଚାକର ପୂଜାରୀ ଜଗୁଆଳି ମାଳୀ ଯାହା କହ ସେଇ ଗୋଟିଏ ଲୋକ ଜଗନ୍ନାଥ। ବୟସ ତାକୁ ବି ପଞ୍ଚାବନ ଡେଇଁଲାଣି। ବାବୁ ମା'ଙ୍କ ବାହାଘର ପରେ ପ୍ରଥମ ଚାକିରି ଜାଗାକୁ ସେ ଆସିଥିଲା। ତାଙ୍କରି ଗାଁ ଘରେ ପିଲାରୁ ବଡ଼ ହୋଇ ବାହାହେଲା ଦି'ଥର। ହେଲେ ପ୍ରଥମ ସ୍ତ୍ରୀ ବର୍ଷଟେ, ତା'ପରେ ବହୁ ଟଣା ଓଟରାରେ ବାହା ହେବା ପରେ ଦ୍ୱିତୀୟ ସ୍ତ୍ରୀ ଡେଲିଭରି ବେଳକୁ ଚାରି ବର୍ଷ ପରେ ଯାଇ ଗଲା। ଯା'ପରେ ଆଉ ନିଜ ପରିବାର କଥା ସେ ଚିନ୍ତା କରି ନାହିଁ। ତା' ନିଜ ବାପା ମା' ରାଉତ ଘର ଚାଷ ଗାଁରେ ଦିନ ବିତାଇଥିଲେ, ସେ ସାନବାବୁର ସହରି ଘରେ ଦିହକ ବିତାଇ ଦେଲା।

ଡକ୍ଟର ରାଉତଙ୍କ ସହ ମୋର ସମ୍ପର୍କଟା ବେଶ୍ ଗଭୀର। ମୁଁ ଯେତେବେଳେ ସ୍କୁଲ ଛାଡ଼ି କଲେଜରେ ଆଡ଼୍‌ମିଶନ ନିଏ ସେ ବ୍ରହ୍ମପୁର ସିଟି ହସ୍ପିଟାଲରେ ଆସି ନୂଆ ଜଏନ୍ କରିଥାନ୍ତି। ଫୁଟବଲ ପଡ଼ିଆରୁ ବାରମ୍ବାର ଗୋଡ଼ବଥା କି ଖଣ୍ଡିଆ ଖାବରାପାଇଁ ଗୋଲାର୍ଡ଼ ଲୋସନଠାରୁ ଆରମ୍ଭ କରି ଘା ବ୍ୟାଣ୍ଡେଜ ଓ ଟିଟାନସ୍ ଇଞ୍ଜେକ୍‌ସନ ନେବା ଭିତରେ ପରିଚୟ ଜମି ଯାଇଥିଲା। ସେଇଠୁ ମୁଁ ବାପାଙ୍କ ବଦଳି ପରେ ଆସି ବାଲେଶ୍ୱରରୁ ବି.ଏ. ପାସ୍ କଲାବେଳକୁ ସେ ପୁରୀରେ ତିନି ବର୍ଷ କଟାଇ, ବାଲେଶ୍ୱରରେ ପହଞ୍ଚିଥିଲେ। ମୁଁ ସମ୍ବଲପୁରରେ ଏମ୍.ଏ. ପଢ଼ିବା ବେଳକୁ ସେ ସମ୍ବଲପୁରରେ। ଖାଲି ଏତିକି ନୁହେଁ ମୁଁ ଲେକ୍‌ଚରର ଚାକିରି କରିବା ଭିତରେ ଯେଉଁ ଆଠୋଟି ଜାଗାରେ କାମ କରିଥିଲି ତା' ଭିତରେ ତାଙ୍କ ସହ ତିନି ଥର ଏକା ଜାଗାରେ ଦେଖା। ଯା'ଠୁ ଅଧିକ ପ୍ରମାଣ ଆଉ କ'ଣ ଦରକାର ଆମ ଦୁଇ ପରିବାରଙ୍କ ମଧ୍ୟରେ ସମ୍ପର୍କର ଗଭୀରତାର।

ତାଙ୍କ ପିଲାଏ, ମାନେ ଦୁଇଟି ପୁଅରୁ ବଡ଼ ପୁଅ ଇଂଲଣ୍ଡ ପଢ଼ିବାକୁ ଯାଇ ବାହାହୋଇ ରହିଗଲେ। ସାନ ପୁଅ ଏଲାଏଡ଼୍ ପାଇ ମାଡ୍ରାସଆଡ଼େ ରହିଲାଣି ଗତ ଦଶ ବର୍ଷ ଇନ୍‌କମ୍‌ଟ୍ୟାକ୍ସ ଡିପାର୍ଟମେଣ୍ଟରେ। ବଡ଼ ପୁଅ ପ୍ରତି ବର୍ଷ ପ୍ରାୟ ଆସନ୍ତି; ଇଂରାଜୀ ସ୍ତ୍ରୀ ଅବଶ୍ୟ ଥରେ ଆସିଥିଲେ ସେଇ ଦିଅର ବାହାଘରକୁ, ଆଉ ଆସି ନାହାନ୍ତି। ପୁଅ କିନ୍ତୁ ପ୍ରାୟ ପ୍ରତ୍ୟେକ ବର୍ଷ ଆସନ୍ତି। ତାଙ୍କର ଗୋଟିଏ ଝିଅ। ଝିଅଟି ତିନି ଚାରି ଥର ଆସିଲାଣି ବାପ ସହ, ହେଲେ ଭାରତ ବା ଭାରତୀୟଙ୍କ ସହ ସମ୍ପର୍କଟା ତା ମା' ପରି; ମାନେ ବର୍ତ୍ତମାନ ବି ବୋଧହୁଏ ତାଙ୍କ ଧାରଣା ଭାରତର ସମ୍ରାଟ ହେଲେ ଇଂରେଜମାନେ। ସାନ ପୁଅର ଦିଓଟି ପିଲା- ବର୍ଷରେ ଶୀତଦିନ ଛୁଟି ଓ ଖରାଛୁଟିରେ ବାପା ମା ଆସନ୍ତୁ ନ ଆସନ୍ତୁ

ପିଲାଏ ପ୍ରାୟ ଆସନ୍ତି। ରହଣି ସେଇ ହପ୍ତାଖଣ୍ଡେ ପୂଜାରେ, ଆଉ ଦଶ ପନ୍ଦର ଦିନ ଖରା ଛୁଟିରେ। ମନଦୁଃଖରେ ଫେରିଯାଆନ୍ତି ପିଲାଏ।

ଡକ୍ଟର ରାଉତ ରୋଟାରୀ କ୍ଲବର ମେମ୍ବର। ଆଗରୁ ଚାକିରି ଜୀବନରେ ମଧ ବିଭିନ୍ନ ସହରରେ ରୋଟାରୀ କ୍ଲବ ମେମ୍ବର ହୋଇ ଆସିଚନ୍ତି। ଏଠି ଭୁବନେଶ୍ୱରରେ ପ୍ରେସିଡେଣ୍ଟ ଥିଲେ। ମୋତେ ବି ସେ ଭର୍ତ୍ତି କରିଥିଲେ ଢେଙ୍କାନାଳରେ ମେମ୍ବର କରି, ଯେତେବେଳେ ସେ ଢେଙ୍କାନାଳରେ ଆରମ୍ଭ କଲେ ନୂଆ କରି ରୋଟାରୀ କ୍ଲବ। ରୋଟାରୀ ଜଗତରେ ମଧ ତାଙ୍କ ନାମ ଡାକ। କାରଣ ସେ ଜଣେ କର୍ମୀ- ଯେଉଁ କାମ ଦିଅ ସେ ନାହିଁ କରିବେ ନାହିଁ ଓ ଯେତେଦୂର ସମ୍ଭବ ସୂଚାରୁରୂପେ କାମ ତୁଲାଇ ଦେବେ।

ଆମେ ଏଥର ଠିକ୍ କଲୁ ମାଡ୍ରାସ ଅଞ୍ଚଳର ରୋଟାରୀ କନ୍‌ଫରେନ୍ସକୁ ଯିବୁ, କାରଣ ରୋଟାରୀ ଇଣ୍ଟରନ୍ୟାସନାଲ ପ୍ରେସିଡେଣ୍ଟ ମାଡ୍ରାସକୁ ଆସୁଚନ୍ତି ନିଜେ। ଆଉ କେହି ଯାଆନ୍ତୁ ନ ଯାଆନ୍ତୁ ଡକ୍ଟର ରାଉତ ନିଶ୍ଚୟ ଯିବେ। କାରଣ ବହୁ ବର୍ଷ ହେଲା କୁଆଡ଼େ ବାହାରକୁ ଯାଇ ନାହାନ୍ତି। ବିଶେଷକରି ନାତି ନାତୁଣୀ, ପୁଅ ବୋହୂଙ୍କ ବାରମ୍ବାର ବାଙ୍ଗାଲୋର, ହାଇଦ୍ରାବାଦ ଇତ୍ୟାଦି ନିମନ୍ତ୍ରଣ ଏଡ଼ାଇ, କାମରେ ବ୍ୟସ୍ତ କହି ଗଡ଼େଇ ଦେଇ ରହିଯାଆନ୍ତି। ଏଥର କିନ୍ତୁ କାହାରିକୁ କହିବାକୁ ପଡ଼ିଲା ନାହିଁ। ଆମକୁ ଧରିଲେ ସାଙ୍ଗରେ। ଆମ ଦୁଇ ଜଣଙ୍କପାଇଁ ଟିକେଟ ମଧ ଆଗତୁରା କରି ପକାଇଲେ। ବାହାରିଲୁ।

ମାଡ୍ରାସରେ ତାଙ୍କ ପୁଅ ଘରେ ଆମେ ଦୁଇ ପରିବାର ରହିଲୁ। ଏତେ ବର୍ଷର ସମ୍ପର୍କ ନେଇ ତାଙ୍କ ପୁଅ ଆମକୁ କାକା ଓ ଖୁଡ଼ୀ ସମ୍ବୋଧନ କରେ ଏବଂ ସେପରି ମାନ୍ୟ ମଧ କରେ। ଘର ଲୋକପରି ତାଙ୍କ ଗେଷ୍ଟରୁମ୍‌ରେ ଆମ ବିଛଣା ହେଲା। ଡକ୍ଟର ରାଉତ ଓ ତାଙ୍କ ସ୍ତ୍ରୀ ନାତି ନାତୁଣୀଙ୍କ ସହ ଶୋଇଲେ। ଭାରି ମଜା ହସଖୁସିରେ ଦିନକ କଟି ଯାଇଥାଏ। ଡକ୍ଟର ରାଉତ ଏମିତିରେ ହସଖୁସି, ଥଟ୍ଟା ତାମସାର ମଣିଷ। ଚବିଶ ଘଣ୍ଟା ସବୁବେଳେ ସବୁ କଥାରେ ଏଡ଼େ ପାଟିରେ ହସ, ତା' ସାଙ୍ଗକୁ ପରିହାସ। ଆଉ ତାଙ୍କ ଦଶ ବର୍ଷର ନାତୁଣୀ ମଧ କମ୍ ନୁହେଁ। ଅଜାର ପଦେକୁ ତାର ପଦେ। ଆଉ ଛ'ବର୍ଷର ନାତି ଟୋକା ମଧ ଯୋଡ଼ି ଦେଉଥାଏ ପଦେ ପଦେ।

ତା'ପରଦିନ କନ୍‌ଫରେନ୍ସ ଆରମ୍ଭ। ସକାଳୁ ଆମେ ବାହାରିବା ବେଳକୁ ପିଲାଏ ମଧ ବାହାରିଲେଣି ସ୍କୁଲ। ସେଦିନ ଶୁକ୍ରବାର। ଆମେ କନ୍‌ଫରେନ୍ସରୁ ରାତିରେ ଫେରିବା ବେଳକୁ ସିଆଡୁ ଖାଇପିଇ ଫେରିଲୁ। ପିଲାଏ ମା'ଙ୍କ ବାରମ୍ବାର ମନା କରିବା ସତ୍ତ୍ୱେ ଆମପାଇଁ ଅପେକ୍ଷା କରି ବସିଥିଲେ। ଘଣ୍ଟାଏ ଗପ କରି ଶୋଇଲେ। ତା'ପରଦିନ ଶନିବାର, ପିଲାଙ୍କ ଛୁଟି। ଆମେ କିନ୍ତୁ ଜଳଖିଆ ଖାଇଦେଇ ବାହାରିଲୁ- ପିଲାଏ ମୁହଁ ଶୁଖାଇଲେ। ଆଜି ଫେରିବାକୁ ଆହୁରି ଡେରି ହେଲା, କାରଣ ଆଜି ଥିଲା ସ୍ପେଶାଲ ନାଚଗୀତର ପ୍ରୋଗ୍ରାମ ଓ ତା'ପରେ ବାଂକ୍ୱେଟ। ରାତିରେ ପହଞ୍ଚିବାବେଳକୁ ସାଢ଼େ ଏଗାର, ପିଲାଏ ଶୋଇଲେଣି।

ରବିବାର ସେମିତି ଗାଧୋଇ ପାଧୋଇ, ରେଡ଼ି ହେଉଛୁ ଜଳଖିଆ ଖାଇବୁ କନ୍‌ଫରେନ୍ସ ଯିବାକୁ। ନାତୁଣୀ ଆସି ଖାଇବା ଟେବୁଲରେ ମୁହଁ ହାଣ୍ଡି କରି ବସିପଡ଼ିଲା। ଡକ୍ଟର ରାଉତ କହିଲେ, "କିଲୋ ମହାରାଣୀ- ଗୁଡ୍ ମର୍ଣ୍ଣିଂ।" ସେ କିଛି ଉତ୍ତର ଦେଲା ନାହିଁ। ଏତିକିବେଳକୁ ନାତି ବି ଆସି ସେଇଠି ଛିଡ଼ା ହେଲା। ତାକୁ ଗୁଡ୍‌ମର୍ଣ୍ଣିଂ କହିଲାରୁ ସେ ବି ଉତ୍ତର ଦେଲାନି। ଡକ୍ଟର ରାଉତ କହିଲେ, "ଓଃ ରାଗିଯାଇଚ ପରା, କ'ଣ କରିବା କହ, ଏଇ ଯେଉଁ କନ୍‌ଫରେନ୍ସ ଚାଲିଚି.."-

ତାଙ୍କ କଥାରେ ବାଧାଦେଇ, ବୋହୂ କହିଲେ, "ଆପଣ ଆଉ କେବେ ଆସନ୍ତି ଯେ, ଏଇ ଯେ ପ୍ରଥମ ଆସିଲେ, ସିଏ ପୁଣି ଘରେ ରହିବା ନ ରହିବା ସମାନ- ପିଲାଏ ସେଇଥିପାଇଁ କାଲିଠୁ ବ୍ୟସ୍ତ। ଆପଣମାନେ ଦୁଇ ଜଣ ଆସି ମାସେ ଦୁଇ ମାସ କଟାଇଲେ ସିନା ଆନନ୍ଦ।"

ତାଙ୍କୁ ଡକ୍ଟର ରାଉତ ବୁଝାଇବାକୁ ଚେଷ୍ଟା କରୁଥିଲେ। ଭୁବନେଶ୍ୱରରେ ତାଙ୍କ କର୍ମକ୍ଷେତ୍ର- ରେଡ୍‌କ୍ରସ, ରୋଟାରୀ, ଅନ୍ଧବଧୀର ଆସୋସିଏସନ ଇତ୍ୟାଦିର ନାମ କହିବାବେଳକୁ ନାତୁଣୀ ଧାଇଁ ଆସିଲା ଚିତ୍କାର କରି- ତା' ଆଖିରେ ଲୁହ ଭରି, କହିଲା- "ରଖମ ତମ ରେଡ୍‌କ୍ରସ, ରଖ ତମ ରୋଟାରୀ। ଆଉ ଦୁଇ ଚାରିଟା ବର୍ଷରେ ଆମେ ସବୁ କଲେଜ ଦ୍ୱାର ମାଡ଼ିବୁ ଯେ ତମକୁ ଆମେ ଖୋଜିବୁ କି ନାହିଁ ଠିକ୍ ନାହିଁ। ଆମ ଜୀବନରେ ଏଇ ଦିନଗୁଡ଼ାକରେ ସିନା ତମର ଦରକାର। ତା'ପରେ କ'ଣ ଆମକୁ ତମେ ଏମିତି ତମ ପଛରେ ଧାଇଁବାର ପାଇବ- ଆମେ ବଡ଼ ହୋଇଗଲେ ?"

ତା' କଥାରେ ବାଧାଦେଇ ତାକୁ କୁଣ୍ଢାଇ ନେଲେ ଡକ୍ଟର ରାଉତ। ତାଙ୍କ ମୁହଁରେ କଥା ନ ଥିଲା। ସେ ନାତୁଣୀକୁ ଚୁମା ଖାଇ ପକାଇଲେ। ମୁହଁ ତାଙ୍କର ଗମ୍ଭୀର ହୋଇଗଲା।

ଜୋତା ମୋଜା ଖୋଲି ପକାଇଲେ। ମୋତେ କହିଲେ, "ତମେ ଦି'ଜଣ ଯାଅ, ଆଜି ତ ସରିବ ଶୀଘ୍ର ପଳାଇ ଆସିବ।" ଆମେ ବି ଯିବାକୁ ଚାହିଁଲୁ ନାଇଁ। ଘରେ ରହିଲୁ। ଡକ୍ଟର ରାଉତ ଦିନସାରା ଘରେ ପିଲାଙ୍କ ସହ ମଉଜରେ ମାତି ରହିଲେ।

ଫେରିବା ଟିକେଟ ହୋଇଥିଲା ତା'ପରଦିନ। ସେ କିନ୍ତୁ ରହିଗଲେ ଟିକେଟ କ୍ୟାନସଲ୍ କରି। ଆମେ ଦୁଇ ଜଣ ଫେରିଆସିଲୁ। ଡକ୍ଟର ରାଉତ ଫେରିଲେ ପ୍ରାୟ ଦଶ ଦିନ ପରେ। ସହରରେ ପହଞ୍ଚି ପ୍ରଥମେ ରେଡ୍‌କ୍ରସ ସେକ୍ରେଟାରୀ ପଦରୁ ଓହରି ଗଲେ। ରୋଟାରୀ ଏବଂ ଅନ୍ୟ ଯେତେସବୁ ଅନୁଷ୍ଠାନରେ କର୍ମକର୍ତ୍ତା ଥିଲେ ସେଥିରୁ ଅବ୍ୟାହତି ନେଇ ଖାଲି ସାଧାରଣ ସଭ୍ୟ ହୋଇ ରହିଲେ। ଖାଲି ସେତିକି ନୁହେଁ ଅନୁଷ୍ଠାନଗୁଡ଼ାକରେ ଆଉ ଉପରେ ପଡ଼ି କାମ କରିବା ବନ୍ଦ କରିଦେଲେ। ଏପରିକି କିଛି ଦାୟିତ୍ୱ ଦେଲେ 'ବୁଢ଼ା ଲୋକ ଉପରେ କାହିଁକି ?' କହି ଟଳାଇ ଦେଲେ।

ପ୍ରତି ଦୁଇ ତିନି ମାସରେ ଥରେ ମାଡ୍ରାସ ଯାଇ ଦଶ ପନ୍ଦର ଦିନ ରହି ଫେରିଲେ। ଏହି ବର୍ଷକ ଭିତରେ ପାଞ୍ଚ ଥର ଗଲେଣି।



# ଭାବାନ୍ତର

ରିଟାୟାର କରିବାବେଳକୁ ତିନି ପିଲାଙ୍କ କାମ ପ୍ରାୟ ଛିଡ଼ି ଯାଇଥିଲା। ବଡ଼ ପୁଅ ଚାକିରି କଲାଣି ତିନି ବର୍ଷ ହେଲା। ଝିଅ ବାହାଘର ସରିଯାଇଥିଲା। ସାନ ପୁଅ ଭଲ ପଢୁଥିଲା ପ୍ରଥମରୁ। ମ୍ୟାନେଜମେଣ୍ଟ କରୁଥିଲା, ସେଇ ବର୍ଷ ବାହାରି ପଡ଼ିଲା ବି ସିଏ। ଦି' ଚାରିଟା ଭଲ କମ୍ପାନୀରୁ ଅଫର୍ ପାଇ ତାର ମନ ମୁତାବକ ବାଛି ସେ ବି ବସାରୁ ଉଡ଼ି ଯାଇଥିଲା, ବିଶ୍ୱନାଥ ବାବୁ ସରକାରୀ ଘରୁ ନୂଆପଲ୍ଲୀ ନିଜ ଘରକୁ ଉଠି ଆସିବା ବେଳକୁ। ବିଶ୍ୱନାଥ ବାବୁଙ୍କ ସ୍ତ୍ରୀ ବେଶ୍ ଯାହାକୁ କହନ୍ତି 'ଘରଣୀଡେଡାଳ'। ପିଲାଙ୍କୁ ମଣିଷ କରିବାରେ ତାଙ୍କରି ଦାନ ସବୁଠାରୁ ବେଶୀ। ବିଶ୍ୱନାଥଙ୍କ ଅଫିସ ଭଲ ତ ସେ ଭଲ। ଅବଶ୍ୟ ପିଲାଙ୍କ ସହ ହସ ଖେଳ ସବୁଥିରେ ସେ ଯୋଗଦେଇ ଆସିଚନ୍ତି ଓ ସ୍ତ୍ରୀଙ୍କ ପାଖରୁ ପିଲାଙ୍କ ସହ ଗାଳି ଶୁଣିଛନ୍ତି ଏଇ ଖେଳପାଇଁ। ଆଜି ଏଟା ଭାଙ୍ଗିଚି ତ କାଲି ଡାଲିଆ ବଡ଼ି ଭାଙ୍ଗିଚି। ଏସବୁପାଇଁ ଏଇ ବୁଢ଼ା ଦାୟୀ। ପିଲାଙ୍କୁ ସବୁବେଳେ ଖେଳ ଆଉ ବଦମାସୀ ଶିଖାଇ ନଷ୍ଟ କରିବାର ମୂଳ ଏଇ ବୁଢ଼ା। ପିଲାଏ ଯୁକ୍ତି ବାଢ଼ନ୍ତି ବାପାଙ୍କ ତରଫରୁ। ହେଲେ ମା'ଙ୍କ ଗର୍ଜନ ଶୁଣି ଚୁପ୍‌ଚାପ୍ ପଢ଼ାରେ ଯାଇ ବସନ୍ତି। ଆଉ ବିଶ୍ୱନାଥ ମଧ ଦୋଷୀଟିଏ ପରି ଭିତରେ ଭିତରେ ହସି ହସି ତାଙ୍କ ଟେବୁଲରେ ଯାଇ ବସିପଡ଼ନ୍ତି ସରକାରୀ ଫାଇଲ ଧରି।

ଇଏ ଗଲା ଦଶ ବର୍ଷ ତଳର କଥା। ପିଲାଏ ସବୁ ବାହାସାହା ହୋଇ ନିଜ ନିଜ ସଂସାରରେ ବ୍ୟସ୍ତ। ବିଶ୍ୱନାଥ ବାବୁ ସ୍ତ୍ରୀ ଅପର୍ଣ୍ଣାଙ୍କ ସହ ଏକା ଏକା ବସି ଭାବନ୍ତି। ଏଡ଼େବଡ଼ ଘର ଆଉ କାହାପାଇଁ। ଉପରେ ତିନୋଟି ଶୋଇବା ଘର ତିନି ପିଲାଙ୍କପାଇଁ

ଆଉ ତଳେ ଦି'ଟା। ଗୋଟେ ନିଜପାଇଁ ତ ଆଉ ଗୋଟେ ଆଇଲାଗଲାପାଇଁ କରିଥିଲେ। ତା' ସାଙ୍ଗକୁ ତଳେ ଡ୍ରଇଁରୁମ୍ ପଛକୁ ଖାଇବା ବାରନ୍ଦା, ରୋଷାଇ, ଷ୍ଟୋର, ଠାକୁର ଘର ଆଉ ଗ୍ୟାରେଜ। ଗ୍ୟାରେଜ ପଛକୁ ଦୁଇଟା ବଖରା ଚାକର ବାକରଙ୍କପାଇଁ। ଏଡ଼େବଡ଼ ଘରକୁ ଲୋକ କାହିଁ! ଭାଗ୍ୟକୁ ତାଙ୍କରି ଡିପାର୍ଟମେଣ୍ଟରୁ ରିଟାୟାର କରିଥିବା ସୁର ଡ୍ରାଇଭର ଭଡ଼ା ଘରୁ ଆସି ଏଇଠି ପଛଘରେ ତା' ବୋହୂ ଆଉ ନାତିକୁ ନେଇ ଆଶ୍ରୟ ନେଇଛି; ସ୍ତ୍ରୀ ତାର କେବେଠୁ ମଲାଣି। ଦରକାରବେଳେ ଗାଡ଼ି ଚଳାଇ ସେ ସବୁଆଡେ ନେବା ଆଣିବା କରେ। ବଜାର ଡାକ୍ତରଖାନା କାମ ମଧ୍ୟ ତାହାରି। ହାତରେ ଚଳିଯାଉଛି। ଘର ଲୋକପରି ଚଳାଇ ନିଅନ୍ତି ସବୁ କଥାରେ ସେଇମାନେ। ଠିକା ଚାକରାଣୀ ଆସି ବାସନ ମଜା, ଘରସଫା, ଲୁଗାସଫା କରିଦିଏ। ସେ ସବୁ ଦିଗରୁ କିଛି ଅସୁବିଧା ନାଇଁ। ହେଲେ ଘରଟା ଖାଲି ଖାଲି।

ଚାହିଁ ବସିଥାନ୍ତି ବୁଢ଼ାବୁଢ଼ୀ ପିଲାଙ୍କ ଛୁଟିକୁ। ପୂଜା ଛୁଟିରେ ପିଲାଙ୍କ ଛୁଟିସହ ବାପ ମା'ଙ୍କୁ ମଧ୍ୟ ଛୁଟି ମିଳିଗଲେ ଏଇଠି ସବୁ ଆସି ଜମନ୍ତି। ଦି'ଥର ତିନିହେଁ ମିଶି ବାପା ମା'ଙ୍କୁ ନେଇ, ପୂଜାରେ ଯାଇ ଦିଲ୍ଲୀ ଓ ବାଙ୍ଗାଲୋର, ମାଡ୍ରାସ ବୁଲି ଆସିଛନ୍ତି। ପିଲାଙ୍କ ଖରା ଛୁଟିରେ ତ ଚାକିରିବାଲାଙ୍କୁ ଛୁଟି ନାଇଁ, ଏଣୁ ନାତିନାତୁଣୀ ସବୁ ଏଇଠି ଜମନ୍ତି ପ୍ରାୟ। ସେତିକିବେଳକୁ ମା'ମାନଙ୍କ ତାଗିଦା, 'ସକାଳୁ ସନ୍ଧ୍ୟା ପିଲାଏ ଦି' ଦି'ଘଣ୍ଟା ପଢ଼ିବାକୁ ବସିବେ।' ସେଇଟା ବଡ଼ କଷ୍ଟକର କାମ। ସକାଳଟା କୌଣସିମତେ ବସାଇ ଦେଇ ହୁଏ କିନ୍ତୁ ସନ୍ଧ୍ୟାବେଳକୁ ଆଜିକାଲି ଟି.ଭି. ପ୍ରୋଗ୍ରାମ ସବୁ। କେତେ ଘଣ୍ଟା କେତେ ମିନିଟ୍‌ରେ କି ପ୍ରୋଗ୍ରାମ ପିଲାଙ୍କ ଜିଭ ଅଗରେ। କାହାର ଫିଲିପ୍ସ ଟପ୍ ଟେନ୍ ତ କାହାର ଓଏ ଓଏ। ସନ୍ଧ୍ୟାରେ ପଢ଼ିବାକୁ ବସାଇବା ସମ୍ଭବ ହୁଏ ନାଇଁ ଆଉ। ଏଣେ ବୁଢ଼ାବୁଢ଼ୀଙ୍କର ମଧ୍ୟ ସନ୍ଧ୍ୟାବେଳେ ଟି.ଭି. ସିରିଆଲଗୁଡ଼ା ଦେଖିବା ଅଭ୍ୟାସରେ ପଡ଼ିଯାଇଛି। କାମ କିଛି ନ ଥିବାରୁ ଦେଖିବାର ଇଚ୍ଛା ନ ଥିଲେ ମଧ୍ୟ ସିରିଆଲ ଜାଲରେ ପଡ଼ିଗଲେ ଗୋଟେ ଉତ୍ସୁକତା ମାଡ଼ି ବସିଥାଏ, 'କଣ ହେଲା !'

ପିଲାଏ ସବୁ ଆସିଲେ ଘରେ ଭିଡ଼ ବଢ଼େ। ସୁର ଡ୍ରାଇଭରର ବୋହୂ ଆସି ରୋଷାଇ କାମରେ ସାହାଯ୍ୟ କରେ। ତା' ସ୍ୱାମୀ ପିଅନ୍ ଅଛି ବ୍ରହ୍ମପୁରରେ। ମାସକୁ ଦି'ଥର ରବିବାର ଦେଖି ଆସେ। ଯେଉଁ କେତେଦିନ ସେ ରୋଷାଇ କରେ ଏଠି, ତା' ଶ୍ୱଶୁର ଆଉ ଆଠ ବର୍ଷର ପୁଅ ଏଇ ରୋଷାଇରେ ଖାଆନ୍ତି। କ୍ଷତି ନାଇଁ ଗଣ୍ଡେ ଖାଇବାରେ, ଏଡ଼େବଡ଼ ବଂଶଟାକୁ ରୋଷାଇ, ଅପର୍ଣ୍ଣା କଣ ପାରନ୍ତେ ? ଏମିତି ତ ଅଧାଦିନ ଅପର୍ଣ୍ଣା ସେମାନଙ୍କପାଇଁ ତରକାରି ପିଠା ମିଠା ଯାହା ଯେମିତି ହୁଏ ପଠାଇ ଦିଅନ୍ତି ; ନ ହେଲେ ବା ସବୁଦିନେ ତିନିଟା ଲୋକ ଖାଇଲେ। ସେଇମାନେ ହିଁ ତ ସବୁ ସୁବିଧା ଅସୁବିଧାର ସାଥୀ।

ଶନିବାର। ଖିଆପିଆ ଶୀଘ୍ର ସରିଯାଇଛି। ପିଲାଏ ସମସ୍ତେ ବସିଯାଆନ୍ତି ଆସି ସିନେମାରେ। ଅପର୍ଣ୍ଣାଙ୍କର ମଧ୍ୟ ସେଇ ପିଲାଙ୍କ ପଛକୁ ଶୋଇ ଶୋଇ ସିନେମା ଦେଖା

ଚାଲିଛି । ଡାଇନିଂ ବାରଣ୍ଡାଟା ବଡ଼ ଲମ୍ବା ହୋଇ; ତାରି ଗୋଟେ କଡ଼ରେ ଚେୟାର ଆଉ ଡିଭାନ ସବୁ ପଡ଼ିଛି, ଟି.ଭି. ମଧ୍ୟ ସେଇଠି । ଦରକାର ପଡ଼ିଲେ ଡାଇନିଂ ଚେୟାର ସବୁ ବୁଲାଇ ଏକାଥରେ ଦଶ ପନ୍ଦର ଲୋକ ଦେଖିପାରିବେ । ଶୋଇବା ଘରୁ ଆଣି ଟି.ଭି.କୁ ସବୁଦିନିଆ ଏ ବ୍ୟବସ୍ଥା କରିଥିଲେ ବିଶ୍ୱନାଥ । ସୁର ଡ୍ରାଇଭର ତା ବୋହୂ ନାତି ପିଲା ଆଉ ଅପର୍ଣ୍ଣା ପ୍ରାୟ ଖାଇସାରି ବସି ଯାଆନ୍ତି ସବୁଦିନେ ଖରାବେଳେ ଓ ରାତିରେ ।

ସବୁ ସିନେମା ବିଶ୍ୱନାଥଙ୍କୁ ଭଲ ଲାଗେନା । ଡାଇନିଂ ଟେବୁଲରେ ବସି 'କଥା' ପଢୁଥିଲେ ବିଶ୍ୱନାଥ । କେଉଁ ଏକ ଗଳ୍ପରେ 'ପ୍ରାପ୍ତବୟସରେ ଅତୀତ କଲେଜ ଜୀବନର ପ୍ରେମିକା' ଗପଟିଏ ପଢୁ ପଢୁ ହଠାତ୍ ତାଙ୍କ ମନ ଫେରିଗଲା ସେଇ ଅତୀତକୁ । କଲେଜ ଜୀବନରେ ସେ ଥିଲେ ଭଲ ଖେଳୁଆଡ଼ । ଫୁଟବଲ, ହକି ଦୁଇଟା ଖେଳରେ ସେ ୟୁନିଭରସିଟିକୁ ରିପ୍ରେଜେଣ୍ଟ କରିଥିଲେ ଆଉ ତା' ସାଙ୍ଗକୁ କ୍ରିକେଟ ମଧ୍ୟ ଭଲ ଖେଳୁଥିଲେ । ହେଲେ କ୍ରିକେଟ ଖେଳଟାକୁ ମାଇଚିଆ ଖେଳ ବୋଲି ସବୁବେଳେ କହନ୍ତି ସେ । ସେ ବର୍ଷ ପୁରୀ କଲେଜରୁ ବ୍ୟାଡ଼ମିଣ୍ଟନ ଖେଳିବାକୁ ଆସି ଅନୁରାଧା ମହାନ୍ତି ଚମ୍ପିଆନ ହେଲା, ସବୁ କଟକ ଟୋକିଙ୍କ ମୁହଁ ଚୋପା କରି । ସେଇ ଖେଳରୁ ତା' ସହ ପରିଚୟ । ବ୍ୟାଡ଼ମିଣ୍ଟନ ତ ସ୍ତ୍ରୀ ଲୋକଙ୍କ ଖେଳ ବୋଲି ବିଶ୍ୱନାଥ ତା' ଦ୍ୱାର ମାଡ଼ନ୍ତିନି । ଅନୁରାଧାସହ ପରିଚୟ ପରେ ମୁଣ୍ଡରେ ପଶିଲା ନିଶା । ବ୍ୟାଡ଼ମିଣ୍ଟନ ଖେଳ ଆରମ୍ଭ କଲେ, ଆଉ ସେ ବର୍ଷ ହିଁ ହେଲେ କଲେଜ ଚମ୍ପିଆନ । ତା'ପରେ ଇଣ୍ଟର କଲେଜ ଯାଇଥିଲେ ସମ୍ବଲପୁର, ସେଠି ପୁଣି ଦେଖା ଅନୁରାଧାସହ । ସେଇଠୁ ୟୁନିଭରସିଟିପାଇଁ ଖେଳିଲେ ଦୁଇ ଜଣ । ସାଙ୍ଗ ହୋଇଗଲେ ଗୌହାଟୀ ପୁଣି ପୁନା । ତାର ବ୍ୟବହାର, ତାର ରୂପ ସବୁଥିରେ ମୁଗ୍ଧ ହୋଇଯାଇଥିଲେ ବିଶ୍ୱନାଥ । ସେ ମଧ୍ୟ ତା କଲେଜ ଗ୍ରୁପ ଛାଡ଼ି ସବୁବେଳେ ବିଶ୍ୱନାଥଙ୍କ ସହ ସମୟ କଟାଉଥିଲା । ତା ବ୍ୟବହାର କଥାବାର୍ତ୍ତାରୁ ବିଶ୍ୱନାଥ ଜାଣିଥିଲେ ସେ ତାଙ୍କ ପ୍ରତି ବିଶେଷଭାବରେ ଆକୃଷ୍ଟ । ନିଜ ଦୁର୍ବଳତା ତ ପ୍ରଥମରୁ । ହେଲେ ପଦେ ପ୍ରେମ କଥା କହିପାରି ନ ଥିଲେ ବିଶ୍ୱନାଥ । ଏମିତି ଏମ୍.ଏ. ପାସ କଲା ପର୍ଯ୍ୟନ୍ତ ଦୁଇ ବର୍ଷ ମିଳାମିଶା ଭିତରେ ସାନ୍ନିଧ୍ୟପାଇଁ ଉଭୟ ଛଟପଟ ହୋଇଛନ୍ତି । ଖେଳିବାକୁ ଯାଇ ସବୁ ସହରରେ ଦୁଇ ଜଣ ସାଙ୍ଗ ହୋଇ ବୁଲାବୁଲି କରି କଟାଇଛନ୍ତି, କିନ୍ତୁ ଜିଭ ଅଗରେ ସେଇ ତିନୋଟି ପଦ କହିବାର ସାହସ ସଂଗ୍ରହ କରିପାରି ନାହାନ୍ତି । ସ୍ପର୍ଶ ଭିତରେ ରିକ୍ସା ବା ଟେକ୍ସିରେ ବସିବାବେଳେ ଯେତିକି ସେତିକି । ସିଟ୍ ଉପରେ ଯାଙ୍କ ହାତ ଆଉ ତା'ହାତ ଅଧ ଇଞ୍ଚ ବ୍ୟବଧାନରେ ଥରି ଥରି ପଡ଼ିରହିଛି । ଆଉ ଟିକେ ଘୁଞ୍ଚାଇ ତା' ହାତ ଉପରେ ରଖିଦେଇ ପାରି ନାହାନ୍ତି କି ତା' ହାତକୁ ନିଜ ହାତ ଭିତରେ ଉଠାଇ ନେଇପାରି ନାହାନ୍ତି । କେବେ କେବେ ସ୍ୱପ୍ନରେ ଆସେ ଅନୁରାଧା । ଆଖିରେ ତାର ଆଶା ଆଉ ଓଠରେ ମିଠା ହସଟା ସେଇମିତି ଆଗପରି ।

ହଠାତ୍ ଲାଇଟ୍ ଲିଭିଗଲା। ପିଲାଏ ବ୍ୟସ୍ତ। ଅପର୍ଣ୍ଣା ଇଲେକ୍ଟ୍ରିକ୍ ଡିପାର୍ଟମେଣ୍ଟବାଲାଙ୍କ ଚଉଦ ପୁରୁଷ ଉଦ୍ଧାରି ଦେଇଗଲେ। ହେଲେ କଣ ହେବ, ସହର ସାରା ଅନ୍ଧାର ଦେଖାଯାଉଛି। ଫୋନକରି ବୁଝିଲେ ପୁରା ସହରରେ କରେଣ୍ଟ ନାହିଁ। ଖବର ନିଆଯାଉଛି। କେତେବେଳେ ଆସିବ କହି ହେଉ ନାହିଁ। ଅଗତ୍ୟା ପିଲାଏ ସେଇଠି ଅପେକ୍ଷା କରି ରହି ଗପ ଜମେଇଲେ। ତଳେ ତ ବିଛଣା ପଡ଼ିଥିଲା ତକିଆ ସବୁ ଆଣି ଗଡ଼ିଲେ। ବଡ଼ ପୁଅର ବଡ଼ ଝିଅ ଆଉ ଝିଅର ବଡ଼ ଝିଅ ବୟସ ପାଖାପାଖି ସାତ ଆଉ ଆଠ। ସେମାନେ ଶୋଇବା ଘର ବିଛଣାକୁ ଉଠିଗଲେ। ଏଠି ରହିଲେ ସାନର ପୁଅ ପାଞ୍ଚ ବର୍ଷ, ଝିଅର ପୁଅ ପାଖାପାଖି। ଯାଙ୍କ ଗପ ଭିନେ ରକମର। ରକେଟ ଆଉ ବୁଲେଟ ଟ୍ରେନ କି ଦେଖିଥିବା ଗାଡ଼ି ଏକ୍ସିଡେଣ୍ଟ।

ଅପର୍ଣ୍ଣା ଚୁପ ହୋଇ ପଡ଼ିଥିଲେ। ସେ ବି ହୁଏତ ଭାବୁଥିବେ ତାଙ୍କ ପିଲାବେଳେ କଥା। ତାଙ୍କର ଭାଇ ଭଉଣୀ ମିଶି ଦଶ। ବାପରେ ଏତେ ଗୁଡ଼ାଏ ପିଲାଙ୍କୁ ଚଳାଉଥିଲେ କିପରି କେଜାଣି। ଛ'ଟା ଭାଇ ବେଶ୍ ପଢ଼ାପଢ଼ି କରି ଭଲ ଚାକିରି କରି ସବୁ ରିଟାୟାର କଲେଣି, ଖାଲି ସାନଟାକୁ ଛାଡ଼ି। ଜୋଇଁମାନେ ମଧ ସବୁ ଚାକିରିଆ; ରିଟାୟାର କଲେଣି ଦି'ଜଣ ତାଙ୍କୁ ମିଶାଇ। ହଠାତ୍ ମନେ ପଡ଼ିଗଲା ରାମ ବାବୁ କଥା। ରାମ ବାବୁ ତାଙ୍କ କାକାଶ୍ୱଶୁରଙ୍କ ଘର ଭଡ଼ାଟିଆ ଘର ପୁଅ। କାକାଙ୍କ ତିନି ଝିଅ ଆଉ ଯାଙ୍କ ଚାରି ଝିଅ ପିଛା ସାଇକେଲ ମାରୁଥିଲା ସିଏ। ବଡ଼ ଝିଅ ବୟସ କୋଡ଼ିଏ ବେଳକୁ ସବା ସାନ, ସ୍କୁଲରେ ପଞ୍ଚମ ଶ୍ରେଣୀ। କିନ୍ତୁ ଗୋଟେ ପରେ ଗୋଟେ ସମସ୍ତଙ୍କ ପିଛା ସେ ସାଇକେଲ ମାରୁଥିଲା। ହୁଏତ ଶୋଇ ଶୋଇ ଅପର୍ଣ୍ଣା ତା'ରି କଥା ଭାବୁଥିବେ; ଆଜି ଯେମିତି ବିଶ୍ୱନାଥ ଭାବୁଥିଲେ ଅନୁରାଧା କଥା।

ହଠାତ୍ ପିଲା ଦୁଇଟିଙ୍କ କଥାରେ 'ଲଭ୍' ଶବ୍ଦ ଶୁଣି ବିଶ୍ୱନାଥ ତାଙ୍କ କଥା ଆଡ଼କୁ କାନ ଡେରିଲେ। ଗୋଟେ କହୁଛି ଆରକୁ "ତୁ କାହାକୁ 'ଆଇ ଲଭ୍ ୟୁ' କହିଛୁ?" ବିଶ୍ୱନାଥ ଚମକିପଡ଼ିଲେ। ଆହୁରି କଣ ଶୁଣିବାପାଇଁ ସେ ଆଗ୍ରହୀ ହୋଇ ରହିଲେ। ଆର ଟୋକା କହୁଛି "ନାଇଁ ତ, ତୁ କଣ କହିଛୁ।" ଏ ହୀରୋ ପୁଣି କହିଲା- "ହଁ, ମୁଁ ଆମ କ୍ଲାସ ମିସ୍‌ଙ୍କ ଝିଅର ହାତଧରି ତାକୁ କହିଲି- "ଆଇ ଲଭ୍ ୟୁ" ପୁଣି ପ୍ରଶ୍ନ, ସେ କଣ କହିଲା? ଉତ୍ତର- "ସିଏ ହସି ହସି ମୋ କାନରେ ମୁହଁ ଲଗାଇ କହିଲା- "ଆଇ ଲଭ୍ ୟୁ।"

ବିଶ୍ୱନାଥଙ୍କ ଭାବାନ୍ତର ହେଲା। ଅନୁରାଧା ସେଇ ଅନ୍ଧାରରେ ଛିଡ଼ା ହୋଇ ତାଙ୍କ ଆଡ଼କୁ ଚାହିଁଛି। ଆଖିରେ ଆଉ ଓଠରେ ତାର ହସଟା ବିଦ୍ରୂପ କଲାପରି ଅନୁଭବ କରୁଥିଲେ ସେ।



# ବାପା

ବାପା ବସିଥିଲେ ତଳେ। ମୁଁ ବ୍ୟସ୍ତ ହୋଇ କବାଟଟା ଭଲ କରି ଖୋଲି ତାଙ୍କ ପାଖକୁ ଆଗେଇଗଲି। ତଳେ କାହିଁକି ଆଜି ବସିଚନ୍ତି! ସବୁଦିନେ ଏମିତି ଅଫିସ ଫେରନ୍ତା, ଉପରତାଲାକୁ ଉଠିବା ପୂର୍ବରୁ ମୁଁ ତାଙ୍କ ରୁମ୍‌ର କବାଟଟାକୁ ଟିକିଏ ମେଲାକରି ଚାହିଁଦିଏ। ବୟସ ୮୫ ଡେଇଁଲାଣି। ଆଜିକାଲି ପ୍ରାୟ ସେ ଶୋଇଥାନ୍ତି- ଆଖିବୁଜି ଶୋଇଥିଲେ ମୁଁ ଧୀରେ କବାଟ ବନ୍ଦ କରି ଉପରକୁ ଉଠିଯାଏ। ନ ହେଲେ କବାଟଟା ଆଉ ଟିକେ ମେଲା କରି ବଡ଼ ପାଟିରେ କହେ- ''କ'ଣ ଶୋଇନ?'' ସେ ମୁହଁ ଟେକି ମୋ ମୁହଁକୁ ଚାହିଁ ଦିଅନ୍ତି। ଆଖିରେ ତାଙ୍କର ଆନନ୍ଦ ଭରିଉଠେ- ପାକୁଆ ପାଟିଟା ତ ସବୁବେଳେ ହସଖୁସିଆ ଦେଖାଯାଏ। କହନ୍ତି- ''ଆଇଲୁ- କେଡ଼େ ଡେରି କରୁଚୁ ସବୁଦିନେ। ଯା ଯା ଶୀଘ୍ର ଖାଇନେ।'' ମୁଁ ଉପରକୁ ଉଠୁ ଉଠୁ ଭାବେ- ''ବିଚରା ଏକା ଏକା ସାରାଦିନ ରହୁଛନ୍ତି।''

ଆଜି ତଳେ ବସିଥିବାର ଦେଖି ବ୍ୟସ୍ତ ହୋଇ ଆଗେଇଗଲି ମୁଁ। ମୋର ଉପସ୍ଥିତି ଅନୁଭବ କରି ସେ ଚମକିଲାପରି ହୋଇ ଉଠିବାକୁ ଚେଷ୍ଟା କଲେ। ମୁଁ ତାଙ୍କ ହାତକୁ ଧରି ଉଠାଇ ଖଟରେ ବସିବାକୁ ସାହାଯ୍ୟ କରିବାକୁ ଯାଇ ଦେଖିଲି ତଳେ ପଡ଼ିଥିବା କଟାଗୁଆଗୁଡ଼ାକ ଅଣ୍ଟାଳି ଅଣ୍ଟାଳି ସେ ବାଁ ହାତରେ ଧରିଚନ୍ତି। ଆହୁରି କିଛି ପଡ଼ିଚି। ବୋଧହୁଏ ବସି ଗୋଟାଉ ଥିଲେ। ସେ ବହୁତ ପାନ ଖାଆନ୍ତି। ତାଙ୍କୁ କିନ୍ତୁ ପାନ ଖାଇବା ମନା। ସେ ଦାନ୍ତ ଲଗାଇ ପାନକୁ ଚୋବାନ୍ତି। ଗୁଆ ସବୁ ଦାନ୍ତ ସନ୍ଧିରେ ପଶି କଳରେ ଘା କଲାଣି। ଯେତେ ଗୁଣ୍ଡ ଗୁଆ କଲେ ତାଙ୍କର ପସନ୍ଦ ନାହିଁ। ଚୁପ୍‌କରି

ଚାକରଙ୍କୁ ପଠାଇ କଟା ଗୁଆ ମଗେଇ ନିଅନ୍ତି । ଏଣୁ ତାଙ୍କୁ କେହି ଦେଖିଦେଲେ, ବିଶେଷକରି ମୁଁ କିମ୍ବା ତାଙ୍କ ବୋହୂ ଦେଖିଦେଲେ- ସେ ଏମିତି ଲୁଚାଇବାକୁ ଚେଷ୍ଟା କରନ୍ତି । ଚୋର ପରି ହେବେ ସେ, ଆଉ ଆମେ ଦେଖି ନ ଦେଖିଲା ପରି ରହୁ । ପରେ ଚାକର ବାକରଙ୍କୁ ଗାଳିଦେଉ । ହେଲେ ତାଙ୍କର ଏପରି ଚୋରପରି ଲୁଚାଇବା ଦେଖିଲେ ହସ ଲାଗେ । ତା' ସାଙ୍ଗକୁ ରାଗ ମଧ୍ୟ ।

ସେ ଖଟ ଉପରକୁ ଗୋଡ଼ ଟେକି ଘୁଞ୍ଚି ବସିଥିଲେ । କେମିତି ଗୋଟେ ଖରାପ କାମ କରିଥିବାରୁ ଲଜ୍ଜିତ ହୋଇ କାଙ୍କୁଡ଼ ପରି ବସିଥିଲେ । ଯେମିତି ଗୋଟେ କଇଁଛ ତା' ଗୋଡ଼ ମୁଣ୍ଡ ଲୁଚାଇ ବସିଯାଏ । ମୁଁ ତାଙ୍କ ମୁହଁକୁ ଚାହିଁଲି । ପାକୁଆ ପାଟିରେ ଗାଲ ସବୁ ଠାକରା ହୋଇଗଲାଣି । ଚମଡ଼ା ସବୁ କୁଞ୍ଚ କୁଞ୍ଚ ହୋଇ ଗୋଟେ ଶୁଖିଲା ପଇଡ଼ ପରି ମୁହଁ ଦେଖାଯାଉଚି । ଶୁଖି ଶାଖି ମୁହଁଟା ଛୋଟ ହୋଇଗଲାଣି- ଦେହଟା ବି ।

ହଁ ହେବ ନାହିଁ! ବୟସ ପଞ୍ଚାଅଶି ଡେଇଁଲା । ଦିନକୁ ଦିନ ମଣିଷଟା ସାନରୁ ସାନ ହୋଇଗଲା ପରି ଲାଗୁଚି! ସତରେ ମୁହଁଟା ସାନ ହୋଇଯାଇଚି ନା ଦେହ? ପାଞ୍ଚ ଫୁଟ ଦଶ ଇଞ୍ଚର କସରତ କଲା ଦେହ । ମା ମଲାପରେ ଘରେ ଅଳସୁଆ ହୋଇ ବସି ରହୁଥିଲେ । ଘରେ କିଛି ବର୍ଷ ବସିଯିବା ପରେ ଧୀରେ ଧୀରେ ଅଣ୍ଟା ପାଖଟା ମୋଟା ହୋଇ ଆସିଥିଲା । ଯୁବା ବୟସ ସାରା ଖେଳ ଆଉ ବେଶ୍ କର୍ମଗତ ଜୀବନ କଟାଇଥିଲେ ସେ । ଏଣୁ ହଠାତ୍ ସ୍ତ୍ରୀ ଅଛେ ପୁଅ ବୋହୂ ପାଖରେ ବସି ବସି ମୋଟା ହୋଇ ଯାଇଥିଲେ । ଭାଇମାନଙ୍କ ପରି ଥଳଥଳ ପେଟ ନାହିଁ କି ଟିକେ କୁଆଡ଼େ ଚାଲିଗଲେ ଘଁ ଘଁ ହୁଅନ୍ତି ନାହିଁ ବୋଲି କେତେ ଗର୍ବ । ସେଥିପାଇଁ ଖାଇବା ପିଇବା ମଧ୍ୟ ଜବର । ମନେପଡ଼ିଲେ ହସିବାକୁ ଇଚ୍ଛା ହୁଏ, ଦୁଧସର ଖାଇବା ନେଇ ମା କିପରି ସବୁଦିନେ ମଧ୍ୟସ୍ଥି କାମ କରି ଆସିଥାଏ ।

ପାଞ୍ଚ ସେର ଦୁଧର ଏଡ଼େ ମୋଟା ସର ସବୁଦିନେ ବାବା ଖାଆନ୍ତି । ମୋର ବି ଲୋଭ ଥାଏ । ହେଲେ ପିଲାଙ୍କର ସେଥିରେ ଆଶା କରିବା ଠିକ୍ ନୁହେଁ । ବାପା କହିଲେ; ସେତେବେଳେ ଆମପାଇଁ ଦେବତାର ତଳକୁ ଥିବା ମଣିଷଟା । ମା କଥାବାର୍ତ୍ତା ବ୍ୟବହାରରେ ଏମିତି ଏକ ଆସ୍ଥାନରେ ବାପାଙ୍କୁ ବସାଇ ଥାଏ ଯେ ପିଲାଙ୍କପାଇଁ ବାପା ଏକ ଦେବତୁଲ୍ୟ ମଣିଷ । ମୁଁ ଯେତେବେଳେ ହାଇସ୍କୁଲରେ ପଢ଼ିଲି, ଚାରିଟା ଝିଅରେ ଗୋଟେ ପୁଅ ମୁଁ, ଏଣୁ ଟିକିଏ ଗେହ୍ଲା ଆଉ ତା' ସାଙ୍ଗକୁ ଜିଦିଆ ହୋଇଥିଲି ବି । ବାପାଙ୍କୁ ଲୁଚାଇ ଥରେ ଜିଦ୍ କରିଥିଲି ମୁଁ ଖାଇବି ଦୁଧର ସର । ମା ବାଧହୋଇ ଦୁଧ ସରରୁ ଖଣ୍ଡେ ଆଗରୁ ଲୁଚାଇ ରଖିଦେବା ଆରମ୍ଭ କରିଥିଲା ମୋ'ପାଇଁ । ବାପା କିନ୍ତୁ ଠିକ୍ ଜାଣିପାରିଥିଲେ । ଯେଉଁଦିନ ମୋ ପେଟ ଖରାପ ଥିବାରୁ ତାଙ୍କୁ ପୂରାଟା ଦିଆ ହୋଇଥିଲା, ସେଦିନ ମା'କୁ ପଚାରିଲେ- "ବାବୁକୁ ଆଜି କାହିଁକି ଦୁଧସର ଦେଇନ-"

ମୁଁ ସେଦିନ ଜାଣିଦେଲି ବାପା ବାହାରେ ଯେମିତି ବିରାଟ ମଣିଷ, ଭିତର ହୃଦୟଟାରେ ବି ସେମିତି ବିରାଟ।

ଖାଲି ଘରେ ନୁହେଁ ସ୍କୁଲ ବାହାରେ ବି ମୋ ବାପା ହିଁ ମୋ ଜୀବନର ଆଦର୍ଶ। ସେ ଖୁବ୍ ଭଲ ଖେଳାଳି, ଭଲ ସଙ୍ଗଠକ, ସ୍କୁଲ କମିଟିରେ ମେମ୍ବର, ଏଣୁ ସମସ୍ତଙ୍କ ସାମ୍ନାରେ ସେ ମୋର ଗର୍ବ। ଯେଉଁଦିନ ସର୍କଲ ଇନ୍ସପେକ୍ଟର ଆସିଥିଲେ ଆମର ଫୁଟବଲ ଫାଇନାଲ ଥିଲା 'ହାଉସ୍' ଟିମ୍‌ମାନଙ୍କର, ମୁଁ ଆମ 'ହାଉସ୍' ତରଫରୁ ଗୋଟିଏ ଗୋଲ ଦେଇ ପ୍ରାଇଜ ନେଲାବେଳକୁ ଇନ୍ସପେକ୍ଟର କହିଲେ- ''ବଡ଼ ହେଲେ ପେଲେ ପରି ହେବୁ ?'' ମୁଁ ପେଲେ ଫେଲେ କ'ଣ ଜାଣି ନ ଥିଲି, କହିଲି- ''ବଡ଼ ହେଲେ ମୁଁ ବାପାଙ୍କ ପରି ଖେଳିବି।''

ସ୍କୁଲରେ ଯେଉଁ ଇଂରାଜୀ ଟ୍ରାନ୍ସଲେସନ ସାର୍ କରୁଥିଲେ ଘରେ ବାପାଙ୍କ ହାବୁଡ଼ରେ ପଡ଼ିଲେ ସେଥିରୁ ବାପା ଦୁଇ ଚାରିଟା ଭୁଲ୍ ବାହାର କରୁଥିଲେ। ଥରେ ରିଟ୍ରାନ୍ସଲେସନର ଗୋଟେ ବାକ୍ୟକୁ ବାପା ଯେପରି ବଦଳାଇ କରି ଲେଖିବାକୁ କହିଥିଲେ, ସ୍କୁଲରେ ଇଂରାଜୀ ସାର୍ ନିଜ ଭୁଲ ଗ୍ରହଣ କରି ତାକୁଇ ଠିକ୍ ବୋଲି କହିଲେ। ସେଦିନ ମୁଁ ଭାବିଲି ଏ ମାଷ୍ଟ୍ରସବୁଙ୍କୁ ମୋ ବାପା ପାଠ ପଢ଼ାଇବେ ପାଞ୍ଚ ବର୍ଷ। ସାଙ୍ଗମାନଙ୍କୁ ସବୁ ସେଇ କଥା ବାରମ୍ବାର କହି ମୁଁ ଗର୍ବ ଅନୁଭବ କରୁଥିଲି।

ଇଏ ଥିଲା ସ୍କୁଲ ବେଳର କଥା। କଲେଜ ବୟସକୁ ଦେଖିଲି, ବାପାଙ୍କ ଖେଳ ଦେଖିବାକୁ ମୁଁ ସେମିତି ଆଉ ଆଗପରି ବ୍ୟସ୍ତ ହୋଇ ପଡ଼ିଆକୁ ଧାଉଁ ନାହିଁ। କଲେଜରେ ପଢ଼ିଲାବେଳକୁ ଗିଟୁ ଆଉ ଚୁନି ଗୋସ୍ୱାମୀଙ୍କ ଖେଳ ଦେଖିଲି ମୁଁ। ଖେଳର ସ୍ୱପ୍ନରେ ଯେଉଁମାନେ ଆଗ ଧାଡ଼ିରେ ଦଉଡୁଥିଲେ ତାଙ୍କ ଭିତରେ ବାପା ଖାଲି ଝାପ୍‌ସା ଝାପ୍‌ସା ଦିଶୁଥିଲେ।

ଯା ଭିତରେ ମୁଁ ଇଂରାଜୀ, ଇକୋନମିକ୍ସ, ଲଜିକ୍ ପଢୁଥିଲି। ଘରେ ଲଜିକ୍ ପଢୁ ପଢୁ କଣ ଗୋଟେ ଅସୁବିଧାରୁ ବାପାଙ୍କୁ ପଚାରିଦେଲି। ବାପା କିଛି କହିବା ଆଗରୁ ମୋ ହାତରୁ ବହିଟା ନେଇ ପାଞ୍ଚ ମିନିଟ୍ ପଢ଼ିସାରି ଉତ୍ତରଟାଏ ଦେଲେ। କିନ୍ତୁ ମୋ ମନକୁ ପାଇଲା ନାହିଁ। ଭାବିଲି କଚେରିରେ ଓକିଲାତିପାଇଁ ଯେଉଁ ଇଂରାଜୀ ଦରକାର ପଡ଼େ ସେଠି ଲଜିକ୍ ବା ବାଇରନ୍ କି ହେମିଂୱେ ସହ ସମ୍ପର୍କ ନ ଥିବ। ଆଉ ବାପାଙ୍କୁ ପାଠ ପଚାରି ନାହିଁ କେବେ ମୁଁ ତା'ପରେ।

ତାଙ୍କ ରୁମ୍ ଦ୍ୱାର ବନ୍ଦକରି ଆସି ବାଥ୍ ରୁମ୍‌ରେ ମୁହଁ ହାତ ଧୋଇ ଖାଇବା ଟେବୁଲରେ ବସିବା ବେଳକୁ ଏଇ ଅତୀତର ପୃଷ୍ଠା ସବୁ ଖୋଲି ହୋଇଯାଉଥିଲା। ମୋ ମୁହଁରେ ଏକ ପ୍ରକାର ଅନ୍ତର୍ନିହିତ ଭାବ ନିଶ୍ଚୟ ପରିସ୍ଫୁଟ ହୋଇ ଦେଖାଯାଉଥିଲା, କାରଣ ସ୍ତ୍ରୀ ମୋ ମୁହଁକୁ ବହୁ ସମୟ ଧରି ଲକ୍ଷ୍ୟ କରୁଥିବାର ମୁଁ ଅନୁଭବ କରୁଥିଲି। ମୋ

ଖାଇବା ବାଢ଼ି ତା'ପରେ ନିଜର ବାଢ଼ିନେଇ ବସି ସାରିବା ପରେ ସେ ପଚାରିଲେ- ''କଣ ଏମିତି ଚୁପ୍ ଚାପ୍ ଯେ ?''

ମୁଁ ତାଙ୍କ ମୁହଁକୁ ଚାହିଁ ଟିକିଏ ହସି କହିଲି- ''ସତରେ ବାପା ଧୀରେ ଧୀରେ କେମିତି ସାନ ମଣିଷଟିଏ ହେଇ ଯାଉଚନ୍ତି କହିଲ ?'' ସେ କିଛି ନ କହି ସାମାନ୍ୟ ଆଶ୍ଚର୍ଯ୍ୟଭାବରେ ମୋ ମୁହଁକୁ ଚାହିଁ ରହିଲେ। ମୁଁ କହିଲି- ''ଏଇ ତଳୁ ଆସିଲି, ସେଇ ଲୁଚାଇ ଲୁଚାଇ ଗୁଆ ଖାଇବା ଚାଲିଚି। ଯେମିତି ମୋ ପାଖରେ ଧରା ପଡ଼ିଯାଇଚନ୍ତି, ଖଟ କୋଣରେ ଯାଇ ଏମିତି ଭାବରେ ବସିଗଲେ ସତେ ଯେମିତି ଆମ ସାନ ପୁଅ ମାଡ଼ ଡରେ ଲୁଚିଚି। ଏଡ଼େ ବଡ଼ ମଣିଷଟା କେଉଁଠି ଖଟ ଉପରେ ଲୁଚିଗଲା ପରି ଲାଗିଲା।''

ସେ ଏଥର ମୋ କଥାର ମର୍ମ ବୁଝିପାରି କହିଲେ, ''ମନେ ନାହିଁ, ମୁଁ ବାହା ହୋଇ ଆସିବାବେଳକୁ ତାଙ୍କର ପଦେ ପଦେ କଥାକୁ ଘରେ ସମସ୍ତେ କିପରି ଚାହିଁ ବସିଥିଲେ। କେତେ ବଡ଼ ମଣିଷଟା ଥିଲେ ସେ! ଧୀରେ ଧୀରେ ଆମରି ଆଖି ଆଗରେ ସେ କେମିତି ସଙ୍କୁଚିତ ହୋଇ ଯାଉ ନାହାନ୍ତି! ମୋତେ ବି ଥରେ ଥରେ ସତରେ ଦୟା ଲାଗେ। ଡାଇବେଟିସ୍ ପରେ ମିଠା ସବୁ ବନ୍ଦ। ଥରେ ଥରେ ସେ ଯେତେବେଳେ ଭାରି କଅଁଳ ଗଳାରେ ମାଗନ୍ତି ମୋତେ, ଭାରି ଖରାପ ଲାଗେ। ମୋତେ ଶୁଭିଲା ''ମା'ରେ ଆଜି ଚାରେ ଚାମୁଚେ ଚିନି ଦେବୁନି ?''



ମୁଁ ମୁହଁ ଟେକି ଅନେଇଲି। ମୋତେ ଶୁଭିଲା ସତେ ଯେପରି ବାପା ମୋତେ କହୁଚନ୍ତି ''ମୋତେ ଦୁଧସର ଟିକେ ଦେବୁନି ?''

●●●



କେବେ ଜାପାନୀ ତ କେବେ ସୁକୁଚିନା ପରି କୌତୂହଳପ୍ରଦ ନାମରେ ନାମିତ ହେବାକୁ ଇଚ୍ଛା କରୁଥିବା ଲେଖକ ଶ୍ରୀ ସୁଧୀର କୁମାର ବିଜୟେନ୍ଦ୍ର ନାରାୟଣ ପିତା ଶ୍ରୀ ସୁଧୀର ଚନ୍ଦ୍ର ଦାସ ଓ ମାତା ଶ୍ରୀମତୀ ଶୈଳବାଳାଙ୍କ ପରିବାରକୁ ଆସିଥିଲେ ୧୯୪୧ ମାର୍ଚ୍ଚ ୩ ତାରିଖରେ । ୧୯୫୬ରେ ଜନ୍ମସ୍ଥାନ କରଂଜିଆ ଉଚ୍ଚ ଇଂରାଜୀ ବିଦ୍ୟାଳୟ, ୧୯୫୮ରେ ରେଭେନ୍ସା କଲେଜ ଓ ୧୯୬୨ରେ ବୁର୍ଲା ଇଂଜିନିୟରିଂ କଲେଜର ଶିକ୍ଷା ସମାପ୍ତି ପରେ ସେ ୧୯୬୨ରେ ସିଭିଲ୍ ଇଂଜିନିୟର ଭାବେ ସରକାରୀ ଚାକିରିରେ ଯୋଗ ଦେଇଥିଲେ । ଗଞ୍ଜାମ, ମୟୂରଭଞ୍ଜ, ବାଲେଶ୍ୱର, ଖୋର୍ଦ୍ଧା, ଭୁବନେଶ୍ୱର ଓ ସମ୍ବଲପୁର ପ୍ରଭୃତି ସ୍ଥାନରେ କାମ କରିବା ପରେ ସଂପ୍ରତି ସେ ଗ୍ରାମ୍ୟ ଉନ୍ନୟନ ବିଭାଗର ଅଧୀକ୍ଷଣ ଯନ୍ତ୍ରୀ ଭାବେ ରାଜଧାନୀରେ ଅବସ୍ଥାପିତ । ସ୍କୁଲ ଜୀବନର ଯୋଉ ଦୁଇଟି କଥାରେ ସୁଧୀର କୁମାର ବିଜୟେନ୍ଦ୍ରଙ୍କର ବେଶି ଆଗ୍ରହ ଥିଲା ତାହା ହେଲା ଫୁଟବଲ୍ ଓ ସାହିତ୍ୟ । ୧୯୬୭ରେ ପ୍ରଥମ କ୍ଷୁଦ୍ରଗଳ୍ପ 'ପରିଚିତାର ପରିଚୟ' ପ୍ରକାଶ ପାଇବା ଠାରୁ ଏ ପର୍ଯ୍ୟନ୍ତ ତାଙ୍କର ଛଅଟି ଗଳ୍ପ ସଂକଳନ ପ୍ରକାଶ ପାଇଛି ଓ ସେଗୁଡ଼ିକ ହେଲା ଜାପାନୀ ବାବୁଙ୍କ କେତୋଟି ଗଳ୍ପ, ଜାପାନୀ ବାବୁଙ୍କ ଆଉ କେତୋଟି ଗଳ୍ପ, ଜାପାନୀ ବାବୁଙ୍କ ପୁଣି କେତୋଟି ଗଳ୍ପ, ମନ ଝରକା ଓ ଅଭାବରେ ଭାବ । ପ୍ରିୟ ପରିଧି ଲେଖକଙ୍କର ସପ୍ତମ ଗଳ୍ପ ସଂକଳନ ।

